

# ଭକ୍ତ୍ୟୁପହାର ।

ପରମ ମାନନୀୟ

ସୁଗୁଣସୌଜନ୍ୟକରୁଣାଦ୍ୟଶେଷ ସଦ୍‌ଗୁଣାଧାର ସାହିତ୍ୟକବତ୍ସଳ କାବ୍ୟାମୋଦୀ ସୁରସିକ ଶ୍ରୀମାନ୍ ଲାଲ ରାଜୀବ-ଲୋଚନ ଦେବ ମହୋଦୟଙ୍କ

ଶ୍ରୀକରକମଳେଷୁ ।

ବନ୍ଦନୀୟ ଲାଲ୍‌ସାହେବ !

ଶ୍ରୀଯୁକ୍ତ ରାଜକୁମାର ବାମଣ୍ଡାର ପ୍ରାତଃସ୍ମରଣୀୟ ରାଜା ମହାପ୍ରତାପଶାଳୀ ଏବଂ ଭାଗ୍ୟବାନ ପୁରୁଷ ୬ ବାସୁଦେବ ସୁଢ଼ଳ ଦେବ କେ, ସି. ଆଇ. ଇ, ଙ୍କର ଅଗ୍ରଜ, ମୁଁ ଜଣେ ସାମାନ୍ୟ ଦରିଦ୍ର ବ୍ରାହ୍ମଣ ସନ୍ତାନ, ଯାବତୀୟ ବିଷୟରେ ଉଭୟର ତୁଳନା କଲେ ଆକାଶ ପାତାଳ ପ୍ରଭେଦ । ଉଭୟ ମଧ୍ୟରେ ଅବସ୍ଥାଗତ ଏତାଦୃଶ ବ୍ୟବଧାନ ସତ୍ତ୍ୱେ, ମୁଁ ଓଡ଼ିଆଭାଷାରେ କୌଣସି ସମୟରେ ଯାହାଏ ଅଧେ ଲେଖାଲେଖି କରେଁ ବୋଲି ଶ୍ରୀଯୁକ୍ତ ମୋରପ୍ରତି ଅନନ୍ୟ-ରାଜକୁମାର ସୁଲଭ ଯେ ଅକୃତ୍ରିମ ସ୍ନେହ ତଥା ଆଦର ପ୍ରକାଶ କରନ୍ତି ତାହା ମୋ ଭଳି ବ୍ୟକ୍ତି ପକ୍ଷରେ କମ ସୌଭା-

ଗ୍ୟର ବିଷୟ ନୁହେଁ ; ଭବଦୀୟ ସାହଚର୍ଯ୍ୟରେ ମୁଁ ବାସ୍ତବରେ ଯେଉଁ ସଜୀବ ଉତ୍ସାହ ଏବଂ ସହାନୁଭୂତି ଲାଭ କରେଁ ତାହା ମୋ ପକ୍ଷେ ଅନନ୍ୟ ସୁଦୁର୍ଲ୍ଲଭ ; ଇତ୍ୟାଦି କାରଣରୁ ମୁଁ ଶ୍ରୀଛାମୁଙ୍କର ନିକଟରେ ଚିରକୃତଜ୍ଞ ।

ଅତ ଏବ ସେହି କୃତଜ୍ଞତାର ଚିହ୍ନସ୍ୱରୂପ ଭବଦୀୟ ଶ୍ରୀକରକମଳରେ ସାହିତ୍ୟକାନନସଂଗୃହୀତ ଏହି ସାମାନ୍ୟ **"ବିନ୍ଦୁଆଚିପତ୍ର"** ପୁସ୍ତିକା ଖଣ୍ଡି ଭକ୍ତିସହକାରେ ଅର୍ପଣ କଲି । ଏହା ସାମାନ୍ୟ ହେଲେହେଁ ହୃଦୟର ଭକ୍ତି ପ୍ରୀତି ଏଥିରେ ନିହିତ ଥିବାରୁ ସାଦରେ ଗୃହୀତ ହେବ ବୋଲି ଆଶା କରେଁ । କାରଣ ଶାସ୍ତ୍ରକାର କହନ୍ତି:-

"ଏକଂ ହରେ ବିଲ୍ୱଦଳେ ହତ ଷ୍ଟୃହଃ
ରମାପତେଃ କିଂ ତୁଳସୀ ଦଳେଽପିବା
ସମାଦର ସ୍ତବ ଭବେନ୍ନହୀୟସଂ
ଯଦେବ ଭକ୍ତ୍ୟା ପରିକଲ୍ପ୍ୟ ଦୀୟତେ ।"

ତା ୪ । ୧୧ । ୧୯୬୨ } ଚିରଅନୁଗତ
କାର୍ତ୍ତିକ ପୂର୍ଣ୍ଣିମା } ଶ୍ରୀଲିଙ୍ଗରାଜ ପାଣିଗ୍ରାହୀ
ଦେବଗଡ଼, ବାମଣ୍ଡା

# ଭୂମିକା ।

"ବକ୍ରୁ ଅଭିପବର" ସମସ୍ତ କବିତା ଗୁଡ଼ିକ "ସମ୍ବଲପୁର ହିତୈଷିଣୀ" "ଗଡ଼ଜାତ ବାସିନୀ" ପ୍ରଭୃତି ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ଏହିକବିତା ସବୁ ପୁସ୍ତକାକାରରେ ପ୍ରକାଶ କରିବାର ବଳବତୀ ଇଚ୍ଛାଥିଲେହେଁ ଅର୍ଥାଭାବ ପ୍ରଧାନ ଅନ୍ତରାୟ ଥିବାରୁ ମୋର ସେ କାମନା ପୂର୍ଣ୍ଣହୋଇ ପାରି ନଥିଲା । ସୁତରାଂ ସେ ଆଶା ମଧ୍ୟ ମୁଁ ସମ୍ପୂର୍ଣ୍ଣ ତ୍ୟାଗ କରିଥିଲି । ଏମଧ୍ୟରେ ମୋର କେତେଜଣ ବନ୍ଧୁ ମୋତେ ଏହିସବୁ କବିତା ପୁସ୍ତକାକାରରେ ପ୍ରକାଶ କରିବାକୁ ନାନା ଉତ୍ସାହ ପ୍ରଦାନ ଦେବାରୁ ଏବଂ ଧାମଣ୍ଡାର ସାହିତ୍ୟପ୍ରିୟ ରାଜା ଶ୍ରୀମାନ ରାଜାବିଲୋଚନ ଦେବ ପୁସ୍ତକର ସମସ୍ତ ମୁଦ୍ରଣବ୍ୟୟ ବହନ କରିବାକୁ ସ୍ୱୀକୃତ ହେବାରୁ ସମସ୍ତ କବିତାଗୁଡିକ ଏକତ୍ର ସମାବେଶ କରି "ବକ୍ରୁଅଭିପବ" ନାମରେ ପ୍ରକାଶ କରିବାକୁ ସକ୍ଷମ ହେଲି । "ବକ୍ରୁ ଅଭିପବ"ର ଲେଖା ଯେଉଁଭଳି ପୁଣି ମୋର ଶକ୍ତି ଯେପରି ସୀମାବଦ୍ଧ ତାହା ଭାବିଲେ କବିତାସମୂହ ଯେ ସର୍ବାଙ୍ଗସୁନ୍ଦର ଓ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ହୋଇଥିବ ଏହା ଆଶାକରି ଯାଏନାହିଁ । ତେବେ ଅନନ୍ତ ଜଳଧି ବନ୍ଧନ ସମୟରେ ସାମାନ୍ୟ ଗୁଣ୍ଡୁଚିମୂଷା ଯେପରି ପ୍ରଭୁଶ୍ରୀ ରାମଚନ୍ଦ୍ରଙ୍କର ସାହାଯ୍ୟ କରି ନିଜକୁ କୃତାର୍ଥ ମଣିଥିଲା, ସେହିପରି ସାହିତ୍ୟକାନନରେ ଏହି କ୍ଷୁଦ୍ରଲେଖକ ଦ୍ୱାରା ତଦନୁରୂପ ମାତୃଭାଷାର ଯତ୍କିଞ୍ଚିତ କାର୍ଯ୍ୟ ଦେଖାଇ ପାରିଲେ ନିଜକୁ ଭାଗ୍ୟବାନ ମଣିବି ଏହିଆଶାର ବଶବର୍ତ୍ତୀ ହୋଇ "ବକ୍ରୁଅଭିପବ" ପ୍ରକାଶ କରିଅଛି । ତା ୪ । ୧୧ । ୧୯୨୨

ରଚକ



# ସୂଚୀପତ୍ର



# ବଣ୍ଟୁଆଡି ପତ୍ର

## କମଳିନୀ ।

ଉଠ କମଳିନି ମୁଖକୁଳ ରବି ,
ଫୁଟାଅ ଫୁଟାଅ ସୌମ୍ୟ ଆନନ ,
ହେଲେଣି ମଳିନ ନଭେ ତାରାଗଣ
ହୀନପ୍ରଭ ଦେଖ ମୃଗଲାଞ୍ଛନ,
ଦେଖ କୁମୁଦିନୀ ଉଷାବିଷାଦିନୀ,
ବିଷମ ପ୍ରମାଦ ଭାବି ମାନସେ
ପଡ଼ିଲାଣି ଲଶାଇ ବଦନ ଘୋଡାଇ
ପୂର୍ବ ପ୍ରସନ୍ନତା ତେଜି ବିରସେ;
କୁମୁଦିନୀ ଦଶା ବିଲୋକି ସହସା!
କୁମୁଦ କାନନ ବିରକ୍ତ ଅଳି ,
ଏସିଲାଣି ଧାଇଁ ମଧୁଭ୍ରାନ୍ତି ପାଇଁ
ଦିଅ ଦିଅ ମଧୁ ସୁଧାରୁ ଟିକି ;
ଅହା, ତ ସ୍ୱପ୍ନରେ ଗୁଞ୍ଜନ ଛଳରେ
କରେ ଭୃଙ୍ଗ ତୋର ସ୍ତୁତିକି ଗାନ
ଉଠ କମଳିନି, ପୂର୍ଣ୍ଣସୋହାଗିନି ,
ଦୂରକର ମନୁ ବିଷାଦ ମାନ ।

କେତେ ପୁଷ୍ପ-ଭୂଷା ପିନ୍ଧି ଊଷା-ଯୋଷା
ମୃଦୁ ସମୀରଣ ଛଳେ ବ୍ୟଜନ
ତୋ ସନ୍ତାପ ହରି— ବିନାଶ ମନାସି
କଲଣି ସଧୀରେ ଦେଖ ସ୍ୱଜନ ,
ଊଷାର ବ୍ୟଜନେ ଦେଖଲେ ସୁମନେ
ହେଲେ କି ସୁନ୍ଦର ତରୁ ବ୍ରତତୀ
ମଧୁର କୂଜନେ ଉଡିଲେଣି ଏଣେ
ଅନନ୍ତ ପ୍ରାଙ୍ଗଣେ ବିହଗପନ୍ତି ,
ହେ କୂଜନ ଧନ ! ନପାରୁକି ଶୁଣି
ପ୍ରେରିଛନ୍ତି ପର୍ ତୋ ପ୍ରାଣପତି
ପକ୍ଷିଙ୍କ ମୁଖରେ ସ୍ନେହ ସହିତରେ
ନିଜ ଆଗମନ ଉଦନ୍ତ ସତି ,
ଶୋକ ପରିହରି ଉଠ ସୁକୁମାରି
ଯାଉଛଣି ତୋର ଦୁଃଖ ଯାମିନୀ ,
ଦୂର୍ବାଶାର ମୁଖ ସିନ୍ଦୂରିତ ଦେଖ
ତୋ ପ୍ରିୟ-ମୟୂଖେ ସତି ନଳିନି;
ସ୍ୱର୍ଗ ପାରିଜାତ ସମ ପ୍ରତିଭାତ
ଦେଖ ତୋ ପ୍ରଣୟପ୍ରତ୍ୟାଶୀ ରବି
ରବିପ୍ରୀମନ୍ତିନି, ଉଠ କମଳିନି,
ଦେଖାଅ ତୋ ସୌମ୍ୟ ବଦନ ଛବି,
ସେ ଛବି ଦର୍ଶନେ ପ୍ରୀତି-ଆକର୍ଷଣେ
ଉଠନ୍ତୁ ଗଗନେ ବିଶ୍ୱଲୋଚନ
ଧର ଦିବ୍ୟ ପ୍ରଭା ଅୟି ଅୟି ଦିବା
ସଞ୍ଚାରିତ ହେଉ ନବ ଜୀବନ ।

ତୋର ସୁଖଭାନୁ          ଧରି ଦିବ୍ୟ ତନୁ
  ହୃଦୟେ ଅଚଳେ ହେଲେ ଉଦିତ ,
ପ୍ରଭାତ ଯାମିନୀ,          ବିମଳ ହାସିନୀ
  ଅତୁଳ ବିଭବେ ହେଲୁ ମଣ୍ଡିତ ,
ହେଲୁ ଭୂତ ସୁଖୀ,          କହ ରବି ସଖୀ,
  ଅସ୍ତାଚଳଗାମୀ ଶୌର୍ଯ୍ୟଦୀପିତ
ଉତ୍କଳ ଦେଶର          ସୌଭାଗ୍ୟ-ଭାସ୍କର
  ହେବ କଲେ ଆଉ କେବେ ଉଦିତ ?
ଉତ୍କଳ-କାସାରେ          ସେ ଭାସ୍କର କରେ
  ଫୁଟିବକି ଆଉ ସୁଖ-ନଳିନୀ
ନବୀନ ଆଲୋକେ          ମନର ପୁଲକେ
  ହସିବକି ଜନ୍ମଭୂମି ଦୁଃଖିନୀ ?
ଉତ୍କଳର ଶୌର୍ଯ୍ୟ          ଉତ୍କଳର ବୀର୍ଯ୍ୟ
  କବିତ୍ୱ ପାଣ୍ଡିତ୍ୟ ସାହିତ୍ୟଚର୍ଚ୍ଚା
ଆସିବକି ଫେର          ଧରି ଦିବ୍ୟଶିଖା
  କହ କମଳିନୀ, ସତୀ ବନିତା ? ।





# ଆମ୍ବଟିଏ ।

—**—

ଗ୍ରୀଷ୍ମଅନ୍ତେ ବର୍ଷା ଅତି ମଣ୍ଡି ଅଛି ମହୀ
ଚତୁର୍ଦ୍ଦିଗେ ଜଳରାଶି ଯାଉଅଛି ବହି,
ଏସମୟେ ଶାଖୀ ଶିରେ ପତ୍ର-ଆବରଣେ
ଏବନଥା ଅମ୍ବଟିଏ ପାଚି ସଙ୍ଗୋପନେ
କି ସୁନ୍ଦର ଝୁଲୁଅଛି ଦର୍ଶନ ହରଷେ
ଅପୂର୍ବ ସମାନ ହୁଏ ପ୍ରସ୍ଫୁଟିତ ମାନସେ ;
ଦିଶଇ ରୁଚିର ବର୍ଣ୍ଣେ ବର୍ତ୍ତ ସ୍ୱର୍ଣ୍ଣ ଜିଣି;
କାନ୍ତି ବେଶପେଟିକାରୁ ପ୍ରକୃତି ମୋହିନୀ
ଛାଡ଼ି ବା ଯାଇଛନ୍ତି ନିଜ ସିନ୍ଦୂର ଫରୁଆ
ସୁରସ-ସିନ୍ଦୂରେ କରେ ହୋଇଛନ୍ତି ଗେରୁଆ ;
ମହକ ଉଠୁଛି ବାସ ନାସା ତୃପ୍ତିକର
ଥୋପି ବା ପଡିବ ରସ ସ୍ୱାଦୁର ଆକର ;
କେତେ ଯେ ପବନ ପୁଣି କେତେ ବୃଷ୍ଟି ଝଡ଼
ମାଲିଣି ରହିଛି ଆମ୍ବ ବୃକ୍ଷରୁ ନ ଝଡ଼ି,
ନିଜ ଅଙ୍ଗୁ ଜାତହୋଇ ଶତ ଶତ ଫଳ
ଝଡ଼ିବାରୁ ଭଲ ଏହା ଜୀବନ-ସମ୍ବଳ
ଯତ୍ନେ ବୃକ୍ଷ ଗୁପତେ ବା ରଖିଛି ସାଇତି
ଦୁର୍ଲଭ ଅପତ୍ୟ ବସ୍ତୁ ଦେଖି ଏହା ଜାତି ?

ଅଥବା ସୁରମ୍ୟ ପୂର୍ଣ୍ଣ ସୌନ୍ଦର୍ଯ୍ୟ ଏହାର
ମୁଗ୍ଧହୋଇ କରୁନାହିଁ ବାୟୁ ଅତ୍ୟାଗ୍ରହ ।
ସୌନ୍ଦର୍ଯ୍ୟର ବଶବର୍ତ୍ତୀ ସମସ୍ତେ ବିଶ୍ୱରେ
ଶୋଭା ସିନା ନିରବତାର ଦର୍ପ ପୂର୍ଣ୍ଣ କରେ ।
ନୋହିଲେ କି କାଷ୍ଠଭେଦୀ ଷଟ୍‌ପଦ ଭ୍ରମର
ମଧୁଆଶେ ପଦ୍ମବନେ କରି "ଗୁଣୁ" ସ୍ୱର
ପ୍ରତ୍ୟୁଷେ ମୁଦ୍ରିତଦଳ ପଦ୍ମିନୀ-ବଦନ
ପ୍ରସନ୍ନ ପାଇଁ କି ଏତେ କରନ୍ତା ଯତନ ?
ଅଦ୍ୟାପି ଅମୃତିଏ ବଲ୍କ ଶାଖାରେ
ପିଲ୍ଲଦଳେ ମିଳିଗଲେ ତୋଳିବା ଅଶାନ୍ତେ ।
ବାମନ ପକ୍ଷରେ ଚନ୍ଦ୍ରମଣ୍ଡଳ ସଙ୍କାଶ
ପିଲ୍ଲଙ୍କ ପକ୍ଷରେ ହେଲା ରସାଳ-ପ୍ରୟାସ ;
ଅତ୍ୟୁଚ୍ଚ ତରୁଅଗ୍ରେ ଶୋଭେ ଫଳବୃନ୍ଦ
କେପାରିବ ତୋଳି ତାହା ନୁହଇ ସହଜ ,
ଚାହିଁଛନ୍ତି ପିଲ୍ଲଦଳ ତୋତେଠରେ ରସାଳ
ଭାବୁଛନ୍ତି କେତେବେଳେ ପୂରିବ ତୋ କାଳ ,
ପଡ଼ିଲେ ଜନ୍ମରେ ତୋତେ କରିବେ ଆହାର
ଧ୍ୱଂସ କରିଦେବେ ତୋର ଶୋଭାର-ଭଣ୍ଡାର ।
ଜନ୍ମକୁ ବଳାନ ମନରେ ଫଳ ରତନ
ଶୂନ୍ୟେ ରହି ଶୂନ୍ୟେ କର ଜୀବନ ଯାପନ ;
ତୋପରି ଅସଂଖ୍ୟ ଫଳ ଏହି ତରୁଡାଳେ
ପାଚି ଝଡ଼ି ଯାଉଛନ୍ତି ରହିଛୁ ଅକାଳେ ,
ଅଦ୍ୟାପି ଯୋଗୁଁ ତୋର ବଢ଼ିଛୁ ଅଦର
ଜନ୍ମେଅପି ବୁଝାଅନା ସେ ଅଦର ଦର ।

ଦୂରେ ଥିଲେ ବଢୁଥାଏ ଅଦର ଯେତକ
ନକଟେ ଆସିଲେ ପୁଣି ଛୁଟଇ ତେତକ ।





# ରୋଗ ଶଯ୍ୟାରେ ।

—୦❀୦—

ରୋଗ, ଶୋକ, ଜରା, ମୃତ୍ୟୁ, ଭୟଭ୍ରାନ୍ତି ପୂର୍ଣ୍ଣ
ଏ ସଂସାର ଅଶାନ୍ତିର ଅସୀମ ସାଗର ,
ସେ ସାଗରେ ପ୍ରେରିଛନ୍ତି ମୋତେ ବିଶ୍ୱପତି
ଦେଇ ମୋ କରରେ ଯେଉଁ ଆଦେଶ-କ୍ଷେପଣୀ
ଜୀବନ-ତରଣୀ ମୋର, ସେ କ୍ଷେପଣୀ ଧରି
ଅଶାନ୍ତିର ସେହି ଘୋର ଅନନ୍ତ ସାଗରେ
ଚଳାଉଥିବି ମୁଁ ସୁଖେ, ଯାବତ ଏ ପିଣ୍ଡେ
ବହୁଥିବ ପ୍ରାଣବାୟୁ , ନିୟତି-ତୋଫାନ
ବହିବ ଯେ କାଳେ, ହେବ ଜଳମଗ୍ନ ତରୀ ,
ମର୍ତ୍ତ୍ୟର ପଦାର୍ଥ ଯେତେ ମର୍ତ୍ତ୍ୟେ ଯିବ ରହି,
ଆସିଥିଲି ଏକା ମୁହିଁ ଏକା ଯିବି ଚଳି
ସେ ଆନନ୍ଦମୟ ଧାମେ ଯହିଁ ରୋଗ, ଶୋକ
ଜରା, ମୃତ୍ୟୁ, ଭୟ, ଭ୍ରାନ୍ତି , ଚିର ନିର୍ବାସିତ ;
ଯିବା ପାଇଁ ଆସିଅଛୁ ଏ ଭବ ସଂସାରେ,
ଆସିଅଛି ଦିନେ ପୁଣି ଯାଇ ହିତୁ ଇଚ୍ଛା
ମର୍ତ୍ତ୍ୟର କର୍ତ୍ତବ୍ୟ ସାରି ଫେରିଯିବ ଦିନେ
ସ୍ୱତଃସିଦ୍ଧ ଏହା, ତେବେ କିପାଇଁ ଡରିବି
ରୋଗେ ? ହେବ ଧୈର୍ଯ୍ୟହୀନ କିପାଁ ବିପଦେ ଅଦ୍ୟ ?

ସନ୍ତୁଷ୍ଟ କେଉଁଅଛି ଏଉ ଧରାପୃଷ୍ଠେ ବିଶ୍ୱେ ?
ଯେ ଧରାରେ ଜନ୍ମିଅଛି ବିଧାତା ଆଦେଶେ
ଅସନ୍ତୁଷ୍ଟ ହେବା ତହିଁ ଘୋର ଅସଙ୍ଗତ ;
ରୋଗ, ଶୋକ, ଜରା ମୃତ୍ୟୁ-ଅତ୍ୟାଗ୍ରର ରାଶି
ନୀରବେ ସହଣ ମୋର ପାଳିବ କର୍ତ୍ତବ୍ୟ ।
କର୍ତ୍ତବ୍ୟ ପାଳନ ଏକା ବିଶ୍ୱେ ଶ୍ରେଷ୍ଠ ଧର୍ମ ।
ନଚ୍ଛାନ୍ତୁ କେବେ ମୋତେ ମୋର ବନ୍ଧୁଗଣ
ନନିଅନ୍ତୁ ତତ୍ତ୍ୱ ମୋର ଆତ୍ମୀୟ ସ୍ୱଜନେ
ଜୀବନେ ଶୋଚନା କରେ ନାହିଁ ସେଥିପାଇଁ ;
ଅଣିତ ନଥିଲେ ସଙ୍ଗେ ଆତ୍ମୀୟ ବାନ୍ଧବ
କର୍ତ୍ତବ୍ୟ ବାନ୍ଧବ ମୋର କର୍ତ୍ତବ୍ୟ ଆତ୍ମୀୟ ।





# ଉତ୍କର୍ଷର ଜିଗୀଷା
# ଓ
## ନେତୃତ୍ୱର ସର୍ବନାଶ ।

—o❀o—

ଜୀବନ ସଂଗ୍ରାମ ଏହି ଧରିତ୍ରୀ ବକ୍ଷରେ
ଲାଗି ଅଛି ଦାବାନଳ ଅପଣା ମଧ୍ୟରେ ,
ଭୀଷଣ ଜିଗୀଷାନଳ ବହ୍ନିଶିଖା ଧରି
ଜଳୁଛି ପ୍ରତ୍ୟେକ ହୃଦେ ବିଶ୍ୱଧ୍ୱଂସ କରି ,
କେହୁ ବୋଲେ ମୁହିଁ ବଡ଼ ମୋ ହୃଦ୍ଦମ ଟାଣ
ମୋଠାରୁ ବଳ ବିତ୍ତେ କା'ର ଅଛି ମାନ ?
ସାମାନ୍ୟ ଗୋଟାଏ ପୁଣି ମୋତେ ନମାଇବ
ମୋ ଶ୍ରୀମୁଖ ଆଜ୍ଞାମାନ ଅବଜ୍ଞା କରିବ ?
ଅନ୍ୟକେହି ଭାବେ ବସି ଏକ ଚମତ୍କାର !
ସକଳ ବିଦ୍ୟାରେ ମୋର ଅଛି ଅଧିକାର
ରାଜନୀତି ଧର୍ମନୀତି ସମାଜ ବନ୍ଧନ
ସକଳ କ୍ଷେତ୍ରରେ ମୋର ଅବାଧ ଗମନ ,
ମୋ ପ୍ରତି ସମ୍ମାନ ଦୃଷ୍ଟେ ଦେଖନ୍ତୁ ସକଳେ
ନମାନି ରହନ୍ତି ମୋତେ କିଏ ଏ ମଣ୍ଡଳେ ?
ବିଦ୍ୟାହୀନ ବୁଦ୍ଧିହୀନ ତୁଚ୍ଛ ଗୋଟାକର
ଅଯୌକ୍ତିକ ବାକ୍ୟେ କିମ୍ପା ହେବ ବଶମ୍ବର ?

ମୋ ମାଟରେ ଚଳନ୍ତି ମୁଁ ସ୍ୱାଧୀନ ଭାବରେ
ଚନ୍ତୁ ସେ ତାହାର ମାଟେ ବସି ତାର ଘରେ ;
ଆତ୍ମସିଦ୍ଧା-ଅନ୍ଧ ହୋଇ ବିଶ୍ୱ ରଙ୍ଗାଳୟେ
ଏରୂପେ ଜଗୀଷା ପୋଷି ନରର ହୃଦୟେ
କଷା ନଷ୍ଟି ଥନ୍ତୁ ଧରି ଅବ ଯେତେ ଦୃଶ୍ୟ
ଦେଖାନ୍ତୁ ନୁହେଁନ୍ତ ତାହା ଘୋର ଅଜମ୍ଭସ୍ୟ ?
ସଂସାରର ନାଶ ପୁଣି ଘୋର କପଟତ
ଦେନଙ୍କ ବିବାଦେ ଘଟେ ଅନ୍ୟର ଅହିତ ,
ଦନ୍ତୀ ଦନ୍ତୀ ମଧ୍ୟେ ହେଲେ ରଣେ ଘୋରରଣ
ନଳ୍ପୁଲ ତାଙ୍କର ହୁଏ ଉଚ୍ଛେଦ ସାଧନ ,
ଷଣ୍ଢ ସହିତ ହେଲେ ଷଣ୍ଢ ବିବାଦ
ନିଶ୍ଚିତ ବଳ୍ମୀକ ଅହା ଗଣର ପ୍ରମାଦ ।
କୌରବେ ପାଣ୍ଡବେ ନିଜ ସ୍ୱାର୍ଥରେ ଲାଗିଲେ
କୋଟି ପ୍ରଜା ଭାରତର କୁରୁକ୍ଷେତ୍ରେ ମଲେ ।
ଏହିପରି ଦୁନିଆର ଚଳନ୍ତି ଚଳଣି
ବ୍ୟାଘ୍ରବଧ ପାଇଁ ବନେ ମହିଷ ବନ୍ଧନ ;
ଅନ୍ୟକୁ ଦମନ କରି ହେବାକୁ କବଳ ।
ଦେଖାନ୍ତୁ ବଡମା ସବେଁ ଭୁଲି ନଶ୍ୱରତା ;
କେତେ ଦିନ ପାଇଁ ଅବା ଏଭବ ବିଭବ !
କେତେ ଦିନ ପାଇଁ ଅବା ଏ ମାନ ସମ୍ଭ୍ରବ !
ଅହେତୁ ଦିନଅ ଏହି ଜଞ୍ଜାଳର ପାଇଁ
ଆଚରନ୍ତି ଦ୍ୱନ୍ଦ ଯେନା ବୃଥା ଭାଇ ଭାଇ ।
ବଡ ସ୍ୱାର୍ଥପର ନର ବଡ ବଦମାସ
ନିଜ ସ୍ୱାର୍ଥ ପାଇଁ କରେ ଅନ୍ୟ ସର୍ବନାଶ

ବସ୍ତ୍ର ସଙ୍ଘା ହେଲା ନାହିଁ ଭଜନର ଦୋଷେ
ପିଠଇ ମାନବ ତା'ର ଗାଧଠିକୁ ଦ୍ୱେଷେ ।
ଅଭିମାନ ମାନବର ଦେଖି ଅବଗ୍ରର
ଜନ୍ମଇ ପ୍ରାଣରେ ଭାଷ ଅଶାନ୍ତ ଅପାର ।





## ଆଗକୁହା ଭାଇ ।

—∗○∗—

ଅଗକୁହା ଭାଇ ତୋର ଦେଖି ବ୍ୟବହାର
ଉଦ୍ଭବ ହୁଅଇ ମନେ ବିରକ୍ତି ଅପାର ,
ନଗଣ୍ୟଟୁ , ତୋତେ କେହୁ ପୁଛେନାହିଁ କେବେ
ଆଗ ଆଗ ହୋଇ କଥା କହୁ କାହିଁ ତେବେ ?
ଭଲକଥା କହୁ କେବେ ପରର ମଙ୍ଗଳ
କରିବା ନୁହେଁତ ତୋର ରୁଚି ଅନୁକୂଳ
ବୃଥା କାହିଁ ଅଯାଚିତ ଭାବେ କହୁ କଥା
ଲୋକଙ୍କର ସର୍ବନାଶ କରୁଛୁ ସର୍ବଥା ?
ହିତୈଷୀ ଛଳରେ ଧରି କପଟ ମୂରତି
ହୁଅଉଛୁ ଭବେ କାହିଁ ପରର ଦୁର୍ଗତି ?
ଅଜ୍ଞକରି ଭାବେ ଧୂର୍ତ୍ତ ବନା ସ୍ୱପ୍ରୟୋଜନ
ଓଳମ୍ବିଲୁ ଯାର ଦେଉଛନ୍ତି ଅନୁକ୍ଷଣେ
ସେ ଏକା ନୁହନ୍ତି ତୋର କେବଳ ଅନିଷ୍ଟ
ଲୋକଙ୍କର ଅଛି ତାଙ୍କ ନିକଟେ ଅଦୃଷ୍ଟ
କେତେ ଲୋକ କେତେ ରୂପେ ଅପଚି ଉତ୍କଟ
କରିବେ ତାଙ୍କର ପାଖେ ବହନ୍ତି ଚାହାଟ ,
ବନା କାର୍ଯ୍ୟେ ରହ ପଛେ ଛଦ୍ମାର ତୁଳନା
ପ୍ରାର୍ଥୀର ପ୍ରାର୍ଥନା କାହିଁ କରୁଛୁ ଖଣ୍ଡନ ?

ପତ୍ରରେ ନାହିଁତ କେହି ମନ୍ତବ୍ୟ ପ୍ରକାଶି
ବୃଥା କାହିଁ ଅଶାନ୍ତିର ଭାଙ୍ଗୁ ଅଶାରଣି ।
ନିଜର ଅଦମ୍ୟ ବିଦ୍ୟା ବୁଦ୍ଧିର ସୂକ୍ଷ୍ମତା
ଦେଖାଇବା ପାଇଁ ନୋହେ ପ୍ରବୀଣବକତା ।
ଦାନାବୁଡ଼ା ରୂପେ ସିନା ଲୋକରେ ଚିହ୍ନାଇ
ହେଉଅଛୁ ବୃଥା ବୃଥା ଅଗକୁହା ଭାଇ ?
ଭଲକଥା, ନିଜ ଯୁକ୍ତିଯୁକ୍ତ ସ୍ୱାର୍ଥସିଦ୍ଧି
କନ୍ଧ ପୁଷ୍ଟି କର ତାହା ସଂସାରର ବୃଦ୍ଧି
( କିନ୍ତୁ ) ପ୍ରଭୁର ସନ୍ତୋଷ ପାଇଁ ପରର ଅହିତ
ଘଟାଇବା ନୁହେଁ ଭାଇ ଯୁକ୍ତି-ଉଚିତ :
ପର ଅନ୍ନବୁଡ଼ା ଜାତ ନୁହଇ ସୁନ୍ଦର
ପାରିବ୍ ଯଦ୍ୟପି ପର ଅନ୍ନ ରକ୍ଷା କର ।

—❀—



# ଉଚିତ ।

—○✻○—

ବରଷା ଆସିଲେ          ତରୁଲତା କୁଞ୍ଜେ
ଗାଏନାହିଁ ପିକ ଆଉ ସେ ଗୀତ
ଭେକଦଳ ଯହିଁ          ବକ୍ତାରୂପେ ଖ୍ୟାତ
ନୀରବ ରହିବା ତହିଁ ଉଚିତ ।
ମୂର ଖଣ୍ଡ ଯେଉଁ          ରଜା ଦରବାରେ
ସଭାସଦ ରୂପେ ପାଆନ୍ତି ସ୍ଥାନ
ଭଦ୍ରଲୋକ ପକ୍ଷେ          ଶତଶ୍ରେୟଃ ଭାଇ
ସେ ବିପଦ ସ୍ଥାନ ଶୀଘ୍ର ବର୍ଜ୍ଜନ ।

—✻○✻—



# ସୁଖର ବସନ୍ତକାଳ ।

—:o:—

ସୁଖର ବସନ୍ତ ସମସ୍ତ
  ନାହିଁ ନାହିଁରେ ଆଉ
ଯୋଟିଲାଣି ଦେଖ ରୌଦ୍ରେ
  ଘୋର ଗ୍ରୀଷ୍ମ ଦାଉ,
ସୁବାସିତ ଅଶା – ପ୍ରସୂନ
  ରୌଦ୍ର ତେଜେ ଝାଉଁଳ
ଝଡ଼ପଡ଼ ହୃଦ—ବୃନ୍ତରୁ
  ଶୁଖି ହେଲାଣି ଧୂଳ ।
ଆନନ୍ଦ—ମଳୟ ଅନଳ
  ବହୁ ନାହିଁ ଜୀବନେ
ନୈରାଶ୍ୟର ତପ୍ତ ଝଟିକା
  ଦେଖ ବହେ ସଘନେ ।
ପ୍ରାଣର କୋକିଳ ଗାୟକ
  ଗାଉ ନାହିଁ ସଂଗୀତ
ମୀରବେ ବସିଛୁ ବୃକ୍ଷରେ
  ହୋଇ ଘୋର ଚକିତ ।
ନାହିଁ ସେ ମଧୁର କାକଳି
  ପ୍ରାଣ ଉଲ୍ଲାସକାରୀ

ନାହିଁ ସେ ସୌନ୍ଦର୍ଯ୍ୟ ସୁଧାଗ
ସବୁ ଯାଇଛନ୍ତି ସର ।
ନାହିଁ ସେହି ସ୍ନିଗ୍ଧ ଶୀତଳ—
ଭାବ ମନମୋହନ
ତପତ ପବନ ବହଇ
ପ୍ରାଣ କରି ଦହନ ।
ପ୍ରକୃତିର ନାହିଁ ସେ ହାସ୍ୟ
ସେହି ମଧୁର ଛବି
ମଧୁରତା ଶିରେ ପଡ଼ିଛି
ଏକ ଭୀଷଣ ପବି ।
ନିଷ୍ଠୁର ଗ୍ରୀଷ୍ମ ପଶୁକି
ସବୁ କରୁଛି ନାଶ ।
ଷ୍ଫୂର୍ତ୍ତି ପ୍ରଫୁଲ୍ଲତା ସକଳ
କରି ଦେଲଣି ଗ୍ରାସ ।
କେଜାଣି ବିଧାତା କାହିଁକି
ପ୍ରେରିଛନ୍ତି ଏହାଙ୍କୁ
ତାଙ୍କର କୁଟୀଳ କପଟ,—
ମାତ୍ର ଜଣା ତାହାଙ୍କୁ ।
ପ୍ରଚଳିତ ଲୋକକ ମଙ୍ଗଳ—
ମନ୍ତ୍ର ନାମ ଯାହାର
ଅମଙ୍ଗଳ ଶଙ୍କା କରିବା
ନୁହେ ସାଧୁ ବିଚାର,
ସହିବାକୁ ମାତ୍ର ପ୍ରଥମେ
କର୍ମ୍ମକାର ହସ୍ତରେ

ଶୋଭେସିନା ଲୌହ କୃପାଣ—
ରୂପେ ବୀରେନ୍ଦ୍ର କରେ ।
ଉପସ୍ଥିତ ଗ୍ରୀଷ୍ମ ପୀଡନ
ପରିଣାମ ସୁନ୍ଦର
ଭାବୀ ଫଳ ନଶ୍ଚେ ଏହାର
ସର୍ବସୁଖସାଗର ।

—✲○✲—



# ଅର୍ଥଲୋଲୁପର ଚୈତନ୍ୟୋଦୟ ।

ଅତି ପୂର୍ବକାଳେ ଅବନ୍ତୀ ନଗରେ
ଥିଲେ ନରପତି " ଧନକେଶରୀ "
ପ୍ରଜା ମୁଣ୍ଡ ପିଟି ପର ରାଜ୍ୟ ଲୁଟି
ସଞ୍ଚିଥିଲେ ଧନ କୁବେର ପରି ,
ବିପୁଳ ସମ୍ପଦେ ପୂର୍ଣ୍ଣ ଘର ଦ୍ୱାର
ମହାଧନୀ ନାମେ ପଡ଼ଇ ଡାକ
ନୃପଙ୍କ ସଞ୍ଚୟ— ପଟୁତା ସୁଗୁଣେ
ଅନ୍ତଃପୁରେ ଯିବେ କୁଲାଏ ଶାକ ।
"ଦାନ" ଶବ୍ଦଟିକୁ ଗୋହତ୍ୟା ସମାନ
ମଣନ୍ତି ରାଜନ ନିଜ ଜୀବନେ ;
ଅକସ୍ମାତ ମୁଖୁଁ ବାହାର ପଡ଼ିଲେ
କାମୋଡ଼ ଦିଅନ୍ତି ଜିହ୍ୱା ତକ୍ଷଣେ ।
ସାଧୁ ବଇରାଗୀ ଦୁଃଖୀ ଦରିଦ୍ରାଦି
ଦୁର୍ଗ ଉପକଣ୍ଠୁ ପାଆନ୍ତି ଧକା
ଭଲକର ଖଣ୍ଡେ ପିନ୍ଧିବା ନିମନ୍ତେ
ରାଣୀଙ୍କ ମନରେ ଜନମେ ଶଙ୍କା ;
ନିଖିଳ ଦୁର୍ଗୁଣ ମଧ୍ୟେ ନୃପଙ୍କର
ମାତୃଭକ୍ତି ଥିଲା ସଦା ଅଟଳ

ଦୁର୍ଗନ୍ଧ ପଙ୍କିଳ        ସରୋବର ବକ୍ଷେ
   ଫୁଟିଥାଏ ଯଥା ଶ୍ୱେତ କମଳ ।
ନୃପ କୃପଣତା        ଜଘନ୍ୟ ବାରତା
   ନୀଳାଚଳ ବାସୀ ଏକ ସନ୍ୟାସୀ
ଶୁଣି ଜନମୁଖେ        କୃପଣ ନୃପତି
   ଜାଣିବା ନିମନ୍ତେ ହୋଇ ଲାଳସୀ,
ଦୁର୍ଗ ଉପକଣ୍ଠୁ        ସିଂହଦ୍ୱାର ଯାଏ
   ବହୁ ବାଧା ବିଘ୍ନ ଲଙ୍ଘି ସେ ପୁରେ
ରାଜ ଦରବାରେ        ହେଲେ ଯାଇଁ ଠିଆ
   ନୃପତି ଆସନ କିଞ୍ଚିତ ଦୂରେ ।
ଅସାଧୁ ଉପାୟେ        ଧନାର୍ଜ୍ଜନ ଚର୍ଚ୍ଚା
   ଲାଗିଥିଲା ନରବର ସଭାରେ
ସାଧୁ ଆଗମନ        କରି ଦେଲା ସ୍ତବ୍ଧ
   ରହିଲେ ସକଳେ ମୂକ ପ୍ରକାରେ ।
ଆସନ ଉପରୁ        ଜଳଦଗମ୍ଭୀରେ
   ଭାଷିଲେ ରାଜନ  ସନ୍ୟାସୀପ୍ରତି
କାହାର ହୁକୁମେ        କି କାର୍ଯ୍ୟ ସାଧନେ
   ଦରବାରେ ମୋର ପଶିଲ ଯତି ?
ପାରିଷଦ ମୁଖୁଁ        ଫିଟିବା ଆଗରୁ
   ଫିଟିଲା ସନ୍ୟାସୀ ମୁଖୁଁ ଉତ୍ତର
"ହେ ଧନ କେଶରୀ,        ଛବ ଗର୍ବଧାରୀ
   ପ୍ରେରିଛନ୍ତି ମୋତେ କରି ଡ଼ଗର
ପରିଧେୟାଭାବେ        ଜନନୀ ତୁମ୍ଭର
   ଭୁଞ୍ଜୁଛନ୍ତି ସ୍ୱର୍ଗେ ବଡ଼ କଷଣ

ପଙ୍କିଲ ବସନ          ଖଣ୍ଡି ଜୀର୍ଣ୍ଣ ଶୀର୍ଣ୍ଣ-
   ହୋଇଛି କଟିବେ ତାଳ ପତନ ।
ମୋହାଠେ ଖବର          ପଠାଇ ଅଛନ୍ତି
   ଗଲାବେଳେ ତୁମ୍ଭେ ନିଜ ସଙ୍ଗତେ
ଜୀବନ ପାଇଁକି          ଛୁଞ୍ଚିଟିଏ ନେବ
   ଲାଗିଥିବ ସୂତା ତାହା ପଛଟେ ।
ମର୍ତ୍ତ୍ୟର ସୃଜନ          ଏହି ଛୁଞ୍ଚି ସୂତା
   ମିଳଇନା ସ୍ୱର୍ଗପୁରରେ କେବେ
ଏଥିଲାଗି ନୃପ          ବିଷମ ବିଷଣ
   ଭୁଞ୍ଜନ୍ତି ସମସ୍ତେ ସମସ୍ତେ ଦେଖିବେ ।
ହେ ଧନ କେଶର          କେବେ ନଶ୍ୱର
   ଗଲାବେଳେ ନେବ ସଙ୍ଗେ ତୁମ୍ଭର
କହିଲି ମୁଁ ଯାହା          ଲେଖି ରଖି ଥାଅ
   ଆପଣାର ନୋଟ ବହି ଭିତର" ।
ସନ୍ୟାସିର ବାଣୀ          ଶୁଣି ନରମଣି
   ବୋଇଲେ "ସୌଭାଗ୍ୟ କାହିଁ ମୋହର
ମାତାର ଅଭାବ          ଘୁଞ୍ଚାଇବ ସ୍ୱର୍ଗେ
   ଥିବ କି ଅନ୍ତରେ ଶକ୍ତି ପିତ୍ରର ?
ଏକ ଛୁଞ୍ଚି କିପାଁ          ଶିର ଧାର ଛୁଞ୍ଚି
   ଅକ୍ଲେଶେ ମୁଁ ଠୁଳ କରିବ ମର୍ତ୍ତ୍ୟେ
ମରଣଶୀଳ ଏ          ଜଗତେ ଜନମି
   ଅସମ୍ଭବ ତାହା ନେବା ସଙ୍ଗତେ" ।
ପୁନର୍ବାର ସେହି          ସନ୍ୟାସୀ ପୁଙ୍ଗବ
   କହିଲେ "ନୃପତି ! ତୁମ୍ଭେ ଜନମି-

ସୁଦସ୍ମାରୁ ଆଜ   ନୃମଣି ପଦରେ
  କରୁଅଛ ଭୋଗ ଏତେ ଅବନୀ ।
ତୁଚ୍ଛ ଛୁଞ୍ଚିଟିଏ   ମାଗିଛନ୍ତି ମାତା
  ଅକ୍ଷମତା କରୁଅଛ ପ୍ରକାଶ
ମାତୃ ମହାଋଣ   କାପର ସୁଝିବ
  ସେଋଣ ବେକକୁ ବିଷମ ପାଶ ?
ଯାହାହେଉ ନୃପ!   ମରଣ ପୂର୍ବରୁ
  ଦେବିକେଁ ଛୁଞ୍ଚି ନିଜ ଶରୀରେ
ମାତୃ ଶ୍ରୀଚରଣେ   ପହୁଞ୍ଚାଇ ଦେଇ
  କରିବ ପ୍ରଣାମ ଅନତ ଶିରେ ।
ଅନ୍ୟଥା ଜନନୀ   ହେଲେ ରୁଷ୍ଟମତି
  ନ ହେବ ତୁମ୍ଭର କେବେ ମଙ୍ଗଳ
ସକଳ ସତ୍‌କାର୍ଯ୍ୟ   ବ୍ୟର୍ଥ ହୋଇଯିବ
  (ହାଣ୍ଡିଏ ଅମୃତେ ଠୋପେ ଗରଳ)" ।
ଦେଲେ ପ୍ରତ୍ୟୁତ୍ତର   ଅବନ୍ତୀ ଈଶ୍ୱର
  ନଶ୍ୱର ଶରୀର ଥିବ କି ରହି
ଯହିଁରେ ସନ୍ୟାସି;   ଜନନୀ ନିମନ୍ତେ
  ଛୁଞ୍ଚି ସୂତା ମୁହିଁ   ନେବି ହେ ବହି ।
ପ୍ରାଣ–ଶୁକ ପକ୍ଷୀ   ଏ ଅଙ୍ଗ–ପିଞ୍ଜରୁ
  ଉଡ଼ିଗଲା ମାତ୍ରେ ଅନନ୍ତ ବନେ
ଶ୍ମଶାନ କ୍ଷେତ୍ରରେ   ଭୀମ ଚିତାନଳେ
  ପୋଡ଼ିଦେବେ ନେଇ ଅସ୍ଥିଷୁ ଜନେ
ଜନନୀ ନିକଟେ   ଅନ୍ତିମ ମୁହୂର୍ତ୍ତେ
  ତାହାର ଇପ୍ସିତ ତୁଚ୍ଛ ପଦାର୍ଥ

ନେଇଦେବା ପାଇଁ      ଦେଖୁନ୍ତୁ ସନ୍ୟାସୀ,
ହେବ ନାହିଁ କେବେ ମୁହିଁ ସମର୍ଥ”
ବୋଇଲେ ସନ୍ୟାସୀ      “ଶୁଣ ନରମଣି,
ଏତେ ବ୍ୟସ୍ତ କିପାଁ ଧନ ନିମନ୍ତେ
ସାମାନ୍ୟ ପଦାର୍ଥ      କ୍ଷୁଦ୍ରିଟିଏ ମଧ
ନାହିଁ ଶକ୍ତି ନେବା ପାଇଁ ସଙ୍ଗତେ ?
ଏ ବିପୁଳ ଧନ      ଏ ବିପୁଳ ରାଜ୍ୟ
ଜୀବନର ସଙ୍ଗୀ ନହେବ ଶେଷେ
ପାର୍ଥିବ ପଦାର୍ଥ      ପୃଥିବୀରେ ଥିବ
ଜୀବ ଚାଲିଯିବ ଅନନ୍ତ ଦେଶେ,
ତେବେ ମୂଢ଼ ନୃପ      କିପାଁଇ ସଞ୍ଚିଛ
ନଖାଇ ନପିଇ ନକର ଦାନ ?
ଅର୍ଥର ମାୟାରେ      ସାଧୁ ସନ୍ୟାସିଙ୍କ-
କରୁଛ ହରଣ କିପାଁ ସମ୍ମାନ ?
ଅପଣା ସମ୍ପଦ      ଭାବୁଅଛ ତୁହ୍ମ,
ସମ୍ପଦ ନଭାବେ ତୋତେ ଆପଣା
ସମ୍ପଦର ଦାସ      ହୋଇ ବୃଥା ବନ୍ଦେ
ଅଛ ଅଛୁ ତୁ କାଉଁ ବୁଲଣା ।
ଏତେ ଯତନରେ      ସଞ୍ଚିଛୁ ଯେ ସବୁ
କୋଟି ଅଂଶୁ ଅଂଶେ ସଙ୍ଗତେ କେବେ
ଯିବ ନାହିଁ ଶେଷେ      କିପାଇଁ କୁଣ୍ଠିତ
ଦରିଦ୍ରକୁ ମୁଠେ ଦେବାକୁ ତେବେ । ?

—୦⁂୦—

# ପାଗଳର ପାନ୍ଥଶାଳା ଅନ୍ୱେଷଣ ।

—✽✽✽—

ଭିକ୍ଷା ମାଗି ମାଗି ଗଡ ପାଟଣାରେ
ଗଣ୍ଡି ମୁଣ୍ଡି ବାନ୍ଧି ଏକ ପାଗଳ
ମିଳିଲା ସାୟାହ୍ନେ ନୃପତି ସଦନେ
ଭୁଞ୍ଜ ଯାର ଆଗେ ଇନ୍ଦ୍ର ମହଲ
ମାର୍ବଲ ପ୍ରସ୍ତରେ ନିର୍ମିତ ସଦନ
ଉଚ୍ଚତାରେ କରେ ନଭସ୍ପର୍ଶନ
ଦେଖିଲା ମାତ୍ରକେ ଦର୍ଶକ ଭାବଇ
ଅବା ଏ ହିମାଦ୍ରି ଗିରି ରାଜନ ।
ଯଥା ସ୍ୱଚ୍ଛତାରେ ଦର୍ପଣ ପ୍ରତିମ
ଚୌଦିଗେ ଫଳନ୍ତ ମୂର୍ତ୍ତି ହୁଅଇ
ଧାଇଁ ଧାଡ଼ି ହୋଇ ପ୍ରକୋଷ୍ଠେ ପ୍ରକୋଷ୍ଠେ
ବହୁରତନର ଦୀପ ଜ୍ୱଳଇ ।
ନାନା ପୁଷ୍ପ ଗୁଚ୍ଛେ ହିନା ଖସ ଖସେ
ମହକ ଉଠୁଛି ନୃପ ମହଲ
ବିଳାସର ଛଟା ଆମୋଦର ଘଟା
ଲାଗିଛି ଚୌଦିଗେ ହୋଇ ବହଳ ।
ମଧୁର ମୁରଲୀ ବୀଣା ସପ୍ତସ୍ୱରୀ
ସିତାର ବେହେଲା ତବଲା ଧରି

ବସି ସ୍ଥାନେ ସ୍ଥାନେ    ବାରବାମାଗଣେ
ତୋଳୁଛନ୍ତି ମଧୁ ସ୍ୱର ଲହରୀ
ଏ ବିସ୍ତୃତ ଘରେ    ନୃପ ମନୋମତେ
ନୃପ ବିଳାସ ବୈଠକ ଏକ
ହୋଇଅଛି ସୃଷ୍ଟି    ରଜତେ କେବଳ
ଭାବନ୍ତୁ ପାଠକେ ତାହାର ଟେକ ।
ତହିଁ ମଧ୍ୟେ ନୃପ    ସିଂହାସନୋପର
ହୋଇ ସମାସୀନ ମନ ଉଲ୍ଲାସେ
ବୈଠକୀ ଦଳର    ସଙ୍ଗୀତ ମଜଲେ
ମାତିଛନ୍ତି ନାନା ଭାବ ବିଳାସେ ।
ଯୋଡ଼ିଏ ବାମାଙ୍ଗୀ    କରି ଅଙ୍ଗ ଭଙ୍ଗୀ
ଗାଇ ଅଧରସଙ୍ଗଯୁକ୍ତ ଗୀତ
ହାତ ଗତ ଭଲ    ନାଚ ଢଳ ଢଳ
କରୁଛନ୍ତି ମୁଗ୍ଧ ନୃପତି ଚିତ୍ତ ।
ଅଳ୍ପ ବୟସୀଙ୍କ    ଅଳ୍ପ ହାସ୍ୟ ଦେଖି
ଆତ୍ମହରା ହୋଇ ନୃମଣି ମଣି
ହୃଦୟ-ଭଣ୍ଡାରୁ    ବିବେକ-ସମ୍ପଦ
ଦେଉଛନ୍ତି ଅଜ ବାମାଙ୍କୁ ଗଣି ।
ମନ୍ତ୍ରମୁଗ୍ଧ ଫଣୀ    ସରି ଏ, ବୈଠକେ
ବାମା ରୂପେ ମୁଗ୍ଧ ନୃପତି ବର
ବଳେ କରଛନ୍ତି    ବୟସ୍ୟଙ୍କ ସହ
ବିସ୍ମରି ସକଳ କାର୍ଯ୍ୟ ନିଜର ।
ଶୁଭିଲା ଅଦୂରୁ    "କାହିଁ ପାଠଶାଳା
ଅଛଇ ଜନର ଆଶ୍ରୟ ସ୍ଥଳ ?

କିଏ ଅଛୁ ଭାଇ　　　　ଦିଅ ଦିଅ କହି
　ଥଣ୍ଡା ନେବ କେଉଁ ଘରେ ପାଗଳ ?
ଦିଶୁଅଛି ଏହି　　　　ମନ୍ଦିର ସୁନ୍ଦର
　ହୋଇଥିବ ନିଶ୍ଚେ ଅତିଥି ବାସ
ହେଲାଣି ଅନ୍ଧାର　　　　କେ ଅଛ ବାହାର
　କହିଦେଲେ କ୍ଳାନ୍ତ କରିବି ନାଶ । ”
ଅସଙ୍ଗତ ବାଣୀ　　　　ଶୁଣି ନରମଣି
　ବୋଇଲେ "ରେ ମୂଢ ଏତେ ଅଜ୍ଞାନ
ପାନ୍ଥଶାଳା ରୂପେ　　　　ଦେଖୁଛୁ ଏ ପୁରେ
　ପଶୁଠାରୁ ଊଣା ତୋହର ଜ୍ଞାନ ।
ପଳାଅ ଅଧମ　　　　ନୋହିଲେ ଚନ୍ଦ୍ରାର୍ଦ୍ଧ
　ବସିବ ତୋହର ସ୍ଥୂଳ ଗଳାରେ
ଦେଖ ଯାଇଟିକେ　　　　ଅଛି ପାନ୍ଥଶାଳା
　ପୂରୁବ ଦିଗରେ ଗଡ଼ ବାହାରେ । ”
ନୃପତି ଭାରତି　　　　ପାଗଳ ଅତିଥି
　ଧୈର୍ଯ୍ୟ ଧରି ଶୁଣି ଯୋଡ଼ିଣ କର
ଭାଷିଲା ଏସନ　　　　" ଏପୁର ପ୍ରାସାଦ
　କାହାର ଅଟଇ ହେ ନରବର" ? ।
ନୃପତି-　ଏପରି ଅଧମ　　　　ଅଛି କେ ସଂସାରେ
　ନାହିଁ ପିଲା ଏଥି ହସନ୍ତେ ଆଜ-
ଶୁଣି ଏ ମୂଢର　　　　ଅସଙ୍ଗତ ପ୍ରଶ୍ନ,
　କାହୁଁ ଅସିଲା ଏ ଅଶିକ୍ଷ ପାଜି ?
ଆରେ ଅର୍ବାଚୀନ　　　　ନାହିଁ ତୋର ଜ୍ଞାନ?
　ଅଟୁ ଅମ୍ଭେ ଏହି ରାଜ୍ୟ ଈଶ୍ୱର

ଏପୁର ମୋହର          ଏ ରାଜ୍ୟ ମୋହର
ଏ ସୌଭାଗ୍ୟ ରାଶି ସବୁ ମୋହର ।
ପାଗଲ- ବୁଝିଲି ନୃମଣି          ତୁମ୍ଭର ସକଳ
ତୁମ୍ଭର ପୂର୍ବରେ ଥିଲା କାହାର ?
କିଏ କରୁଥିଲେ          ଏଥି ନୃପବାସ
ଅଟଇ କି ନାମ ନୃପ ! ତାଙ୍କର ? ।
ନୃପ- ଆମ୍ଭ ପୂର୍ବେ ଆମ୍ଭ          ପିତାଙ୍କ ଆୟତ୍ତ
ଥିଲା ଏହି ପୁର, ରାଜ୍ୟ, ସମ୍ପତ୍ତି
ତାଙ୍କ ଅନ୍ତେ ଆମ୍ଭେ          ଭୋଗ କରୁଅଛୁ
ଯେଣୁ ଅଟୁ ତାଙ୍କ ଜ୍ୟେଷ୍ଠ ସନ୍ତତି ।
ପା:ଗଲ- ତୁମ୍ଭଙ୍କ ପିତାଙ୍କ          ଅବିର୍ଭାବ ପୂର୍ବେ
ଏପୁର ପ୍ରାସାଦ ଥିଲା କାହାର ?
ତୁମ୍ଭଙ୍କ ଉତ୍ତାରେ          କିଏ ବା ଏପୁରେ
କରିବ ଏ ସବୁ ରଙ୍ଗ ବିହାର ?
ନହୋଇ ବିରକ୍ତ          କହ ନରନାଥ
ଅଜ୍ଞାନ ଅଧମେ ସତ୍ୟ ବଚନ
ଦର୍ଶିଲେ ଦଣ୍ଡନ୍ତୁ          ପଛକେ ଶ୍ରୀଛମୁ
ଶୁଣିବାକୁ ମୋର ବଳନ୍ତି ମନ ।
ନୃପ- ପିତୃଦେବ ପୂର୍ବେ          ଥିଲେ ପିତାମହ
ତାଙ୍କର ଥିଲା ଏ ଘର ଦୁଆର
ମୋର ଅନ୍ତେ ପୁଣି          ମୋ ଅମ୍ଭଜ ଜନେ
କରିବେ ଏଥି ସୁଖେ ବିହାର ।
ପାଗଲ - ତେବେ ନରବର          ନୁହେ ମୋର ଭ୍ରମ
ଏହିତ ସେ ପାନ୍ଥ-ଜନଆଳୟ

ମର୍ତ୍ତ୍ୟର ବାଟୋଇ    ତବ ବାପ ଅଜା
  କରିଥିଲେ ଯହିଁ ବାସ ଅଶସ୍ୟ ।
ପିତୃ ପିତାମହ    ତୁମ୍ଭର ନୃପତି
  ଯାଇଛନ୍ତି ଦେଖ ଯଥା ଏ ଘର
ପାହୁଗଲେ ରାତି    ଚାଲିଯିବ ତୁମ୍ଭେ
  ମନେ ପଡୁଥିବ ଘର ମର୍ତ୍ତ୍ୟର ।
ବୃଥା ନିନ୍ଦ ମୋତେ    କରି ଅଷ୍ଟାଳନ
  ତୁମ୍ଭର ନୂତନ ଏ ଚଳୁ ସଦନ
ବୃଥା ଧାର୍ମ୍ମି ହୁଅ    ମନେ ବହୁ ଗର୍ବ୍ବ
  ଅନର୍ଥ ସୁଖରେ ହୋଇ ମଗନ ।
ତୁମ୍ଭର ପୂର୍ବ୍ବର    କେତେ ନରପାଳ
  ଆସି ଏଥି ରହି ଗଲେଣି ଚାଲି
ତୁମ୍ଭ ଅନ୍ତେ ପୁଣି    ତୁମ୍ଭ ପୁଅ ନାତି
  ପାନ୍ଥଭାବେ ମାତ୍ର ବସିବେ କାଲି ।
ତେବେ ନରପତି    କହ ସତ୍ୟ ଭଲ
  ପାନ୍ଥଶାଳା ଆଉ କାହାକୁ କହି
ଶୀଘ୍ରମୂ ମୂଢ଼ କି ? ଏ ପାଗଲ ମୂଢ
  ଯାବନ୍ତୁ ବିବେକ-ଅମୃତେ ରହି ।

—୦❀୦—



# ଅର୍ଜୁନ ଓ ଉର୍ବଶୀ ।

( ପ୍ରସିଦ୍ଧ ବଙ୍ଗୀୟ "ଭାରତବର୍ଷ" ପତ୍ରିକାରେ ପ୍ରକାଶିତ
ଆଲେଖ୍ୟ ଦର୍ଶନେ )

—○ ❋ ○—

କି ଏ ପୁରୁଷସିଂହ ସୌମ୍ୟ ଶ୍ୟାମ ମୂର୍ତ୍ତି
ବୀର୍ଯ୍ୟଦୀପ୍ତ , ଭାରତର ମହାରଙ୍ଗମଞ୍ଚ ?
ସୁଗଠନତନୁ ଯେହ୍ନେ ବିଶ୍ୱଜୟୀ କାମ ,
ବିଶାଳ ଲଲାଟପଟେ ହୁଅଇ ବନ୍ଦିତ
ଭକ୍ତିବ୍ୟାପ୍ତ ପ୍ରତିଭାର ମଧୁମୟ ଛନ୍ଦ ;
କପାଟ ବିସ୍ତୃତ ବକ୍ଷ, ଶୌର୍ଯ୍ୟ ସିଂହାସନ ;
ଆଜାନୁଲମ୍ବିତ ଭୁଜ କରେ କମ୍ପିତରେ
ସହସ୍ର ଧିକ୍କାର , କିଏ ଏ ଯୁବକ ମଣି ?
ବୃଷସ୍କନ୍ଧେ ବିଲମ୍ବିତ ଶ୍ୱେତ ଉତ୍ତରୀୟ
ଗୌରବଗୁରୁ ବକ୍ଷେ କରେ ଧବଳା ଜାହ୍ନବୀ ?
କାହିଁ ଉଭା ସରକଟେ ପୁରୁଷ ପୁଙ୍ଗବ
ଚମକିଲା ପର ? ସନେ ଭୟର ସଞ୍ଚାର
ହୋଇଅଛି ଅବା କେଉଁ ଭୀଷଣ ଦର୍ଶନେ ?
ନା, ନା, ଭାରତର ରଙ୍ଗଭୂମି ଏ ପୁରୁଷେ
କରିଥିବ ଭୟ ସ୍ପର୍ଶ ଅସମ୍ଭବ ଏହା ;
ଶୁଣି କେଉଁ ଅସଙ୍ଗତ ପ୍ରସ୍ତାବ ଶ୍ରବଣେ

ଷଣ୍ମୁଖଙ୍କ ସଙ୍କାଶେ ଏ ଯୁବକ ମଣି
ହୋଇଛନ୍ତି ଅବା ଉଭ ମନର ବିଷାଦେ ?
ଏ କିଅଣ ? ନାରୀମୂର୍ତ୍ତି ? କେ ଏ ରମଣୀ ?
ଯେସନ୍ତେ ପ୍ରସ୍ଫୁଟିତା ରମ୍ୟା କୁସୁମ ବୃନ୍ତେ !
ଅପରୂପ ସୌନ୍ଦର୍ଯ୍ୟର ସ୍ଫୁରିତ ବିଧୂୟେ
ଧର୍ଷିଇ ନୟନ ପଥ, ଅପୂର୍ବ ସୁଷମା
ନିର୍ମେଘ ଆକାଶେ ଉଷା ପ୍ରଥମ ବିକାଶ;
ଥୋପିପଡ଼େ ଶରୀରରୁ ଯୌବନ ମାଧୁରୀ
ବସନ୍ତ ଉଦ୍‌ଗମେ ନବ ପଲ୍ଲବର ସମ;
ଉଜ୍ଜ୍ୱଳ ବରଣା ନାରୀ ନୀଳ ଦୁକୂଳରେ
ଆବରି ବରାଙ୍ଗ ନୀଳବାରିଦମଧ୍ୟସ୍ଥ
ଚପଳାଷ୍ଫୁରଣଶୋଭା ପକାଉଛି ଦନ ;
କମ୍ବୁକଣ୍ଠୀ, ସିଂହକଟି, ପୂର୍ଣ୍ଣଚନ୍ଦ୍ରାନନା
ଘନକେଶା, ବିମ୍ବାଧରା ରାଜୀବନୟନା
ଶୁକଚଞ୍ଚୁ-ନାସାପୃଷ୍ଠ କୁଞ୍ଚିତ-କୁନ୍ତଳା!
ଲଲନାଲଲାମଭୂତା ରମଣୀ ରତନ
କିପାଁ ଉଭା ଯୁବକର ବାମ ପାର୍ଶ୍ୱରେ ?
ତର୍ଜ୍ଜନୀ ସଙ୍କେତ କରି କିପାଇଁ ବାମାଙ୍ଗୀ
ରୋଷପୂର୍ଣ୍ଣ ନେତ୍ରେ ଚାହେଁ ଯୁବକର ପ୍ରତି ?
କିମ୍ବା ଉତ୍ପୀଡନ ରୂପ ଘୋର ଅତ୍ୟାଚାରେ
ହୋଇଣ ଅତୃପ୍ତରତ କାମ-ସୋହାଗିନୀ
କରୁଛନ୍ତି ଉତ୍ପୀଡକ ସ୍ୱାମୀକୁ ଶାସନା
ନା, ହୃଦେ ପତ୍ନୀର ଧର୍ମ୍ମ-ପଥରେ ଶାସନା,
କି ଏ ରମଣୀ ? କା'ର ଗର୍ବ-ଷୀଣ୍ଣବୃତ୍ତିକୁ

ହୋଇଅଛି ସମ୍ଭବା ଏ ଲକ୍ଷ୍ମୀ ସୁନ୍ଦରୀ ?
ନନ୍ଦନସ୍ଥିତ ପତି ପତ୍ନୀ ଏ ଯୁଗଳ ମୂର୍ତ୍ତି ,
ଜନନୀ ସମ୍ମୁଖେ ମୂକ ଠିଆ ହୋଇଥାଇ
ରହିଛନ୍ତି ଯୁବଜନମଣି ସଧୀରେ, ବାଳକେ
ଯମ କୋଳେ ; ମାତୃଭକ୍ତ ହୁଏ ନନ୍ଦଶିଶୁ
ସୁପ୍ରଶାନ୍ତ ସୁଗମ୍ଭୀର ବଦନ ମଣ୍ଡଳେ ;
ଏ ଶୌର୍ଯ୍ୟ ସୌନ୍ଦର୍ଯ୍ୟ ରାଶି, ସମ୍ଭବେ କି ନାହିଁ
ଦାନବ କଠିନ ହାତେ ;
ଓହୋ କି ଭୀଷଣ ! !
ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ଅଛି ଏତେ ଭୀଷଣତା ?
ପରିମଳମୟ ଶୁଦ୍ଧ ମଲୟ ସମୀରେ
ରହିଅଛି ଦୁର୍ଗନ୍ଧର ଉତ୍କଟ ପ୍ରଭାବ ?
ଜଗତ ମୋହନ ଦିବ୍ୟ ପାରିଜାତ ମଧ୍ୟେ
ବିଷାକ୍ତ କୀଟର ବାସ ? ଅମୃତେ ଗରଳ ?
ନିଷ୍ପାପ ନାଶିନୀ ସ୍ୱର୍ଗପୁର ପ୍ରବାହିନୀ
ସ୍ୱଚ୍ଛତୋୟା ମନ୍ଦାକିନୀ ପୂତଗର୍ଭରେ
ଗଳିତଶବର ଏକ ଭୀଷଣ ଦୂଷିତ
କୁଣ୍ଡ ଅଛି ଲୁକ୍କାଇତ କେଜାଣି ବା ଏହା ?
କି କଲୁ କି କଲୁ ଅକି ନିଷ୍ଠୁର ହୃଦୟେ ;
ନିନ୍ଦିବ ରମଣୀ ଦେବୀ ଉର୍ବ୍ବଶୀ ସୁନ୍ଦରୀ ! ;
ରହି ସଦା ଦେବମେଳେ ଇନ୍ଦ୍ରର ଭବନେ
ଦେଖି ନାହିଁ କେତେ ସାଧୁଜ୍ଞାନୀ ବ୍ୟବହାର ,
ଶୁଣି ସଦା ମଧୁମୟ ଉପଦେଶ ଗାଥା
ଟେଲ ସଂଯମୀ ବନ୍ଧୁ ମୁନୀନ୍ଦ୍ର ବଦନୁ ,

## ଅର୍ଜ୍ଜୁନ ଓ ଉର୍ବ୍ବଶୀ ।

ଏ ହୀନ ପ୍ରବୃତ୍ତି ତୋର ସ୍ୱର୍ଗର ରମଣି ?
ଏତେ ଅସଂଯତା ? ତୁଚ୍ଛ ପ୍ରବୃତ୍ତି ତାଡନେ
ଅକାର୍ଯ୍ୟ ସାଧନ ପାଇଁ ହେଲୁ ଧୈର୍ଯ୍ୟହୀନା ?
ସାରଧର୍ମ ରମଣୀର ଲଜ୍ଜା, ପାତିବ୍ରତ୍ୟ
ଭୁଲିଗଲୁ ମୁହୂର୍ତ୍ତକେ ଏସ ପରମ ଧନ ?
ଶିତାର ସେବିକା ହୋଇ ସ୍ୱର୍ଗରେ ଆଶକ୍ତି !!!
କିପରି ସହିଛି ସ୍ୱର୍ଗ? ସାପରାଧ ମନ୍ତ୍ର
ମର୍ତ୍ତ୍ୟଭୂମେ ଘଟିଥିଲେ ଏ ଘୃଣ୍ୟ ଘଟଣା
ହୋଇ ସାରନ୍ତାଣି ମର୍ତ୍ତ୍ୟ ଉପାଖ୍ୟାନ ଗାମୀ ;
ଯେଉଁ ସ୍ୱର୍ଗେ ଏତେରୂପେ ଏତେଜ୍ଞାନୀ ଜନ
ଏତେଉନ୍ନତ ଭାବେ ଟେକି ଧରନ୍ତି ଶିର
ପୁଣ୍ୟର ଭବନ ସେହି ସ୍ୱର୍ଗର ଏଗତି ?
ସ୍ୱର୍ଗର ସୁଦକ୍ଷ ହୋଇ ଦୂରକର ଲଜ୍ଜା
ପାର୍ଥିବ ସୌନ୍ଦର୍ଯ୍ୟେ ମୁଗ୍ଧ ହୋଇ କଳଙ୍କିନୀ !
ଅସଙ୍ଗତ ପ୍ରସ୍ତାବରୁ କଲୁ ଉପଗତ
ନିବାତକବଚହନ୍ତା ବୀର ଧୁରନ୍ଧର
ନ୍ୟାୟବାନ ଧର୍ମ୍ମଗାମୀ ବାସବ ନନ୍ଦନ
ମଧ୍ୟମ ପାଣ୍ଡବ ସାଧୁ ଫାଲ୍‌ଗୁନୀ ନିକଟେ
ଜିତେନ୍ଦ୍ରିୟ ସଚ୍ଚରିତ୍ର ପାର୍ଥ ଧୀରମଣି
ପାପପୂର୍ଣ୍ଣ ସେ ପ୍ରସ୍ତାବେ ହୋଇ ଅସ୍ୱୀକୃତ
ହିନସ୍ତେ ମାଗନ୍ତେ କ୍ଷମା ନୁଆଇଁଣ ମଥା ,
ଦୁଃଶୀଳେ, ବିବେକ ଶିରେ କରି ପଦାଘାତ
ଭୀମ ଅଭିଶାପ ବହ୍ନି ଦେଉଛୁ ଅକାଣ୍ଡ
ଯୁବକ ଜୀବନେ ? ଏତେ ହୀନ ତୋ ହୃଦୟ ?

ବାହୁବଳେ ଯାର ଆଜି ସ୍ୱର୍ଗ ନିଷ୍କଣ୍ଟକ
ଏ ଆନନ୍ଦ ଏ ସୌନ୍ଦର୍ଯ୍ୟ ରହିଲା ଅକ୍ଷୁଣ୍ଣ ,
ସ୍ୱର୍ଗ ନିବାସିନୀ ହୋଇ ତୁହିଲୋ ଉର୍ବଶି ;
ପ୍ରତିଉପକାର ଆଜି କରୁଅଛୁ ଏହା ? ।
ସାଧୁପ୍ରାଣ ଧନଞ୍ଜୟ ଆଦର୍ଶଜୀବନ
ପ୍ରାଣଦେବ, ଦେବନାହିଁ ପାପର ପ୍ରଶ୍ରୟ ;
ନିଜପରି ଭାବିଅଛୁ ବିବେକ ବିହୀନ
ଅସଂଯତ ଧୈର୍ଯ୍ୟହୀନ ସେ ବୀର ପୁଙ୍ଗବେ ?
ଭବିଷ୍ୟ ମଙ୍ଗଳ ପାଇଁ ପ୍ରଫୁଲ୍ଲ ମାନସେ
ବକ୍ଷପାତି ସହିବ ତୋ ଅଭିଶାପ-ବଜ୍ର ,
ଦେବ ନାଃ କଦାପି ବୀର ପାପର ପ୍ରଶ୍ରୟ ;
ପିତା ଯାର ଦେବରାଜ, ଭ୍ରାତା ଧର୍ମ୍ମବୀର
ଶାନ୍ତମୂର୍ତ୍ତି ଯୁଧିଷ୍ଠିର, ଭୀମ ବୃକୋଦର ,
ପ୍ରାଣସଖା ଯାର ନିଜେ ପ୍ରଭୁ ଯଦୁପତି ,
ଯା, ପ୍ରତାପେ କମ୍ପି ନିଜେ ଶୂଳୀ ଶମ୍ଭୁ ହର
ସତତ ପ୍ରସନ୍ନ, ଅଜି ତୁହି କାମାତୁରେ
ଦେଖାଉ ତା' ଅଗ୍ରେ ତୁଚ୍ଛ ଅଭିଶାପାନଳ ?
ସାଧୁ ସାଧୁ , ଧନଞ୍ଜୟ ସଂଯମୀ ଶିଖର
ଆରୋହି ବିବେକ-ରଥେ ଧୈର୍ଯ୍ୟ-ଶରାସନେ
ଯୋଖି ରଥୀ ଦୃଢ଼ତାର-ତୀକ୍ଷ୍ଣ ମାର୍ଗଣ
ଯେ ବୀରତ୍ୱ ଦେଖାଇଲ ବୀରେନ୍ଦ୍ର କେଶରି !
ପ୍ରକୃତ ବୀରତ୍ୱ ତାହା ଅଟଇ ଜଗତେ ;
ନିଜର ପ୍ରବୃତ୍ତି ସଙ୍ଗେ କରି ଘୋର ରଣ
ଜୟୀହେବା ମାନବର ମାନବତ୍ୱ ଚିହ୍ନ ;

ଗଣିକା ସ୍ୱଭାବ ସ୍ୱର୍ଗ ମର୍ତ୍ତ୍ୟରେ ସମାନ
ଇନ୍ଦ୍ର ବେଶ୍ୟା ଏ ଉର୍ବ୍ବଶୀ ତହିଁର ପ୍ରମାଣ ;
ବଡଘରେ ବଡପାପ ନହୁଅଇ କଚ୍ଛ
ପିତାଙ୍କର ଭୋଗ୍ୟା ଦେଖ ପୁତ୍ରଠାରେ ସ୍ୱେଚ୍ଛ ;
ସ୍ୱର୍ଗ ଉଚ୍ଚ ମର୍ତ୍ତ୍ୟ ନୀଚ ବୃଥା ଭାବ ନର;
ସବୁଠାରେ ରହୁଅଛି ପାପ ବ୍ୟଭିଚାର ।





# କରୁଆ କରୁଆ ।

—o❋❋❋o—

କାରୁଆ କରୁଆ    ପରର ଅନଷ୍ଟ
  କେର ଅନଷ୍ଟକାରୀ ପାଷଣ୍ଡ ନର !
କେତେଦିନ ଆଉ    ସାଧୁରୁ ତୁ ଦାଉ
  ତୁଟିଲାଣି ତୋର ସୌଭାଗ୍ୟ ଦିଶା ;
ଥିବକୁ ନ ମନେ    ଏ ବିଶ୍ୱ ଭୁବନେ
  ଲକ୍ଷଲୋକ ଅନ୍ନେ ପକାଇ ଧୂଳି ,
ଭୁଞ୍ଜିବ ଏକାକୀ    ଜଗତ ସମ୍ପତ୍ତି
  ଭୁଲି ଲକ୍ଷ ଲକ୍ଷ ନୟନେ ଶୂଳ ?
ବୃଥା ଆଶା ତାହା    ଭବିଷ୍ୟତେ ଗୃହା
  ଚିର ସ୍ଥିର ନୁହେଁ କାହୁ ସଂସାରେ
କୋଳ ଖାଇ କେହୁ    ମଞ୍ଜି ଯୋଡ ନାହିଁ
  ଧନ ମାନ କଥା କିଏ ପଚାରେ ? ।
ପୌର୍ଣ୍ଣମାସୀ ଗର୍ବେ    ଯେ ରଜନୀ ଦିନେ
  ହସୁଥାଏ ପ୍ରାଣ ପୁଲକ ଭରେ
ଅମାବାସ୍ୟା ଆସି    ପଞ୍ଚଦଶ ଦିନେ
  ଭାଙ୍ଗିଦିଏ ଗର୍ବ ଗାଢ଼ ଅନ୍ଧାରେ ।
ପରଦାନା ମାଇ    ଅନ୍ୟାୟ୍ୟ ଆଚରି
  ଅରକଙ୍କୁ ଯେତେ ଭଟେ ହଭବ

ଆସୁଅଛି ଦିନ          ଯାହିଁ ଟଳିଯିବ
ଟଳିଯିବ ଏହୁ ମାନ ସମ୍ଭ୍ରମ ।
ଦୁଷ୍ଟ ମଧୁକର          ସୁମନ ସଂସାର
ଲୁଟପାଟ କର ଅନ୍ୟାୟ ହାତେ
ଯଜ୍ଞଥାଏ ଯେତେ          ରହେ କି ତା' ଶେଷେ
ନାଅନ୍ତି କୁଣ୍ଠନ କର ମାନବେ ।
ରେ ଅହଂକାର !          ବିଶ୍ୱର ଭଗାର !
କାର୍ଯ୍ୟାକାର୍ଯ୍ୟପ୍ରଭେଦ ନକରି ଜ୍ଞାନ
ଯେ ଉଲ୍ଲଟ ଆପ          ଅର୍କେ ଲଗିଛି
ସେ ପାପେ ପଡ଼ିବୁ ଦିନେ ଅଜ୍ଞାନ ।
"ଅଧର୍ମ୍ମ ସମ୍ପତ୍ତି          ବଢ଼ଇ ଝଟିତି
ସିବାତ୍ବେଷ୍ଟନ ଯାଏ ମୂଳ ସହିତ"
ଅଧର୍ମ୍ମୀ ଏ ଉକ୍ତି          ବୁଝିବା କଠିନ
ସ୍ୱାର୍ଥମୋହେ ତାର ପ୍ରାଣ ଜଡ଼ିତ ।





# ଶିବ-ସର୍ପ ।

—୦❁୦—

କେତେ ବଳବାନ    ବିନତା ନନ୍ଦନ
 ପକ୍ଷଘାତେ ଯା'ର ଚମକେ ମେରୁ ,
କ୍ଷୁଦ୍ର ସର୍ପ ବଂଶ    ତା'ଆଗରେ କିସ
 ନାମଶୁଣି ଗର୍ତ୍ତେ ପସନ୍ତି ଦୂରୁ ।
ହାସ୍ୟରେ କପାଳ    କି ନଙ୍କରେ କାଳ
 ଶିବଅଙ୍ଗେ ରହି କେତୋଟା ସାପ
ଖାଦକ ଗରୁଡେ    ବେଖାତର ଭାବେ
 ଫେଣଟେକି ଅହା ଦେଖାନ୍ତି ଧାପ ।
ଦେଖ କାଳ ପାଏ    ନରେଖି ଗରୁଡ
 ମନରାଗ ମନଭିତରେ ମାର
ସବୁ ଅତ୍ୟାଚାର    ସହଇ ନୀରବେ
 ନିନେଇ ତୃଷାଯୁ ନେଇକୁ ଉର ।
ଶିବଅଙ୍ଗଭ୍ରଷ୍ଟ    ହେଲେ ସେ ସରପେ
 ଜ୍ଞଳିଯିବ ଏହି ଉଦ୍ଧତ ପଣ
ମୁଣ୍ଡ ଥଣ୍ଡୋ ଫଣା    ହୋଇଯିବ କଣା
 ବୁଝିବେ ଗରୁଡ ଶକ୍ତିର ଠାଣ ।

—୦❁୦—

# କଳିରାଜର ରାଜନୀତି ।

—୦ଃ✽ଃ୦—

ବିସ୍ତୀର୍ଣ୍ଣ ପ୍ରାନ୍ତର ଯୋଜନେ ଓପାର
　　　ବୈଶାଖ ମାସର ମଧ୍ୟାହ୍ନ ଖର
ବହେ ଝାଞ୍ଜିବାତ ପ୍ରଚଣ୍ଡ ଉତ୍ତପ୍ତ
　　　ଧରା ଯେସନେ ଭାଇ ! ତାତଲା ଖର ;
ପୋଡିଯାଏ ଗୋଡ ଶୁଖିଯାଏ ହିଆ
　　　ଉହଲେ ଦବକନେ ନିଜେ ପରାଣ
ନାହିଁ ଜଳ ଛାଇଁ ନାହିଁ ତରୁଛାୟା
　　　ବାଟୋଇର ସୁଖ ଆରାମ ସ୍ଥାନ ।
ମୃଗତୃଷ୍ଣା ଦୂରୁ ଝଲସିଲ ହୋଇ
　　　ବଢାଏ ଦୁରାଶା ପାନ୍ଥଜନର
ଶେଷ ଶାନ୍ତିଭୂମି ଦୁଷ୍ଟ ଅଜ୍ଞାନୀ
　　　ବଢାଏ ପ୍ରତ୍ୟୟ ଯଥା ଅନ୍ୟର ।
ଏ ଭୀମ ପ୍ରାନ୍ତରେ ପ୍ରଚଣ୍ଡ ରୌଦ୍ରରେ
　　　କେ ଜାଣି କି ଲକ୍ଷ୍ୟ ପଥିକ ଏକ
ଚାଲୁଅଛି ବାଟେ ହୋଇ ଯଷ୍ଟିହସ୍ତ ;
　　　ମଥା ପୋଡି କହ ତଳକୁ ବେକ ।
ଚାଲି ଚାଲି ପଥ ତୃଷାରେ ଅଶକ୍ତ
　　　ହେଲଣି ପଥିକ ପ୍ରାଣ ଅଥୟ

ଶୁଷ୍କକଣ୍ଠତାଲୁ ଅବଶଚରଣ
ଚୌଦିଗ ଦହଇ ଅଙ୍ଗାରମୟ
ଉତ୍କଟ ପିପାସା ଜ୍ୱାଳାରେ ପଥିକ
ହୋଇ ପଥଭ୍ରଷ୍ଟ ଖୋଜଇ ଜଳ
ଭୁଲି ପୂର୍ବ ଲକ୍ଷ୍ୟ ଧାଏଁ ଏଣେ ତେଣେ
ଲକ୍ଷ୍ୟ ରହିଅଛି ପାଣି କେବଳ ।
ବକ ହଂସାଳୀ ଉଡ଼ୁଥିଲେ ଦୂରେ
ଜଳଥିବ ତହିଁ କରି ତର୍କଣା
ଦଉଡ଼େ ସେ ପଥେ ବସି ଆଶାରଥେ
ପଦଶ୍ରାନ୍ତେ ବୁଦ୍ଧି ହୁଅଇ ବଣା ।
ତୁଳି କଣ୍ଟା! ଖୁଣ୍ଟା ଭୁଲି ଉଗ୍ର ନଗ୍
ଯାଉ ଯାଉ ପାନ୍ଥ ଯେସନ୍ତେ ସ୍ୱପନ
ଦେଖିଲା ଅଗ୍ରତେ ଲୋଡ଼ୁଥିଲା ଯାହା
ସୁବିସ୍ତୀର୍ଣ୍ଣ ତରଭୁଜର ବନ ।
ମନ ହସ ହସେ ପ୍ରାଣ ଗଦଗଦେ
ଡାକିଲା ରକ୍ଷକେ ହୋଇ ବିକଳ
"କିଏ ଅଛ ଭାଇ ଆସ ବେଗେ ଧାଇଁ
ଯାଏ ମୋ ଜୀବନ ତୃଷା ପ୍ରବଳ,
ଉଚିତ ମୂଲ୍ୟରୁ ନିଅ ବେଶି ପଛେ
ଦେଇଯାଅ ମୋତେ ଫଳ ଗୋଟିଏ
ଉଡ଼ୁଛି ମୋ ପ୍ରାଣ କର ଅନୁଗ୍ରହ
ପାଇଲେ ଅଶ୍ୱସ୍ତ ହେବ ଟିକିଏ;,
ନିର୍ଜ୍ଜନ ପ୍ରାନ୍ତର ବୈଶାଖ ମଧ୍ୟାହ୍ନ
କିଏ ଶୁଣୁଅଛି କାହାର ଡାକ

ନଷ୍ଟ କେନ୍ତେ ଋଷିଏ ଶୋଭଥିବେ ଏବେ
ଘର ମଧ୍ୟେ ଗାଇ ପଗାଳ ଶାକ ।
ନ୍ୟାୟକଷ୍ଟ ଯାନ୍ତୁ ନଦେଖି ବାହାକୁ
ତରଭୂଜ କ୍ଷେତେ ପସିଲ ଯାଇଁ
ଠଙ୍କାଟିଏ କାଟି ଅଣ୍ଟାରୁ ନଜର
ଗଲ ତରଭୂଜ ତୋଳିବା ପାଇଁ ;
ଦେଖିଲ ଅସଂଖ୍ୟ ଫଳ ଫଳିଅଛୁ
କେଉଁଟି ତୋଳିବ ଭାଲୁଛୁ ଆସି
ତୃଷାରେ ଅଥୟ ହୋଇ ସବୁ ଫଳ
ବଞ୍ଚନା କୌଶଳେ ନେଲ ସେ ଋଷି
ମୂଲ୍ୟ ବାବଦକୁ ଠଙ୍କାଟିଏ ଥୋଇ
ତୋଳି ଫଳଟିଏ ଦେଲେ ବାହାରେ
ବିକଟ ପୁରୁଷ ଦୀର୍ଘ ନାଶା କଣ୍ଠ
ରକ୍ତଚକ୍ଷୁ ଯୁବା ଉଭା ଆଗରେ
ଦୀର୍ଘ ଯଷ୍ଟିଧର ମଦ ପେଟେ ଖାଇ
ଯାନ୍ତୁଙ୍କୁ କହେଲି ଗର୍ଜି ଭର୍ତ୍ସି
ଛଏରେ ଅଶିଷ୍ଟ ଦୁର୍ବୃତ୍ତ ନଷ୍ଟ
ଏ ସାହସ ତୋର କାହୁଁ ଆସିଲ ?
ମୋର ଛଡ଼ ତଳେ ପୃଥିବୀ ସନ୍ତ୍ରସ୍ତ
ମୋତେ ଅବହେଳା କର ପାମର
ମୋ ନୀତି ଲଙ୍ଘନ ମୋ ଧର୍ମ ଅମାନ୍ୟ
କରୁଅଛୁ ଏତେ ଦମ୍ଭ ତୋହର ।
ଉପଯୁକ୍ତ ଶାସ୍ତି ଦେବି ତୋତେ ଆଜ,
ରଖିବ ସତ୍ୟର ଧର୍ମର ତ୍ରାଣ

ମୋର ଗ୍ରଜ୍ୟେ ରହି ମୋର ଅନ୍ନ ଖାଇ
　　କରୁ ଅବହେଳା ମୋର ବଧାନ ?
ଧର୍ମ ସତ୍ୟ ନ୍ୟାୟ ରଖିବେ କପରି
　　ଦେଖିବ ସମ୍ପ୍ରତ ଇଷ୍ଟ ସୁନର
ବୋଲ ପାର୍ଶ୍ୱ ଯଷ୍ଟି ଟେକଲା ଦୁର୍ଦ୍ଧର୍ଷ
　　ନରୀହ ଧାର୍ମିକ ପାନ୍ଥ ଉପର ,
ଉତ୍ସବହୁଳତ ତୃଷାପ୍ରପୀଡ଼ତ
　　ଭ୍ରୂଷିଲ ବାଟୋଇ ଷମନ୍ତ୍ର ଦେବ
କର୍ପା: ଏଡ଼େ ରୋଷ କରନାହିଁ ଦୋଷ
　　ପାଳବ ଶ୍ରୀମୁଖୁ ଯେ ଆଜ୍ଞା ହେବ ;
ତୃଷାତୁର ମୁହିଁ ଚଳିପାରୁ ନାହିଁ
　　ଦଅ ପରଦମ୍ଭ ହେ ବଞ୍ଚମଣି
ଷେବର କରଡା ହୋଇଥାଅ ଯଦ
　　ନପାଇ ଦେ ଦେବ ! ଟିକିଏ ପାଣି
ତୃଷାତୁର ପ୍ରାଣେ ଭ୍ରମୁଅ ଏ ଷେନ୍ଦେ
　　ପଶିଲ ଜାକ୍ଲ ଶୁଣିଲେ ନାହିଁ
ନ୍ୟାୟ ଅନୁରୋଧେ ଟୋକାଟିଏ ଥୋଇ
　　ଅଣେଛୁ ଫଳଟି ଖାଇବା ପାଇଁ
ପ୍ରାଣ ଯାଉଅଛୁ କର ଯାହା ଯଚ୍ଛେ
　　ଖାଉଛୁ ଏ ଫଳ ଧୀର ପ୍ରବର
ଅପରାଧ ହେଲେ ପଣି ଦେଖ ଯାଇ
　　ଅଛୁ କ ନା ଟଙ୍କା ବୃକ୍ଷ ମୂଳର
ଛାତଥ ଭାରତ ସେ ଯୁବା ମୂରତ
　　ଶୁଣି ଅଘାତ୍ରତ ଫଣୀ ସମାନ

ଗରଜ କ୍ରୋଧରେ ଦ୍ୱିଗୁଣିତ ଭାବେ
ବୋଇଲରେ ଅର୍ବାଚୀନ ଅଜ୍ଞାନ !
ଜାଣୁ ନାହିଁ ମୋତେ ମୋହର ପ୍ରତାପେ
ଥରହର ଆଜ ମର୍ତ୍ତ୍ୟ ମଣ୍ଡଳ
ସତ୍ୟ ନ୍ୟାୟ ଧର୍ମ ଗଲେଣି ପଳାଇ
ଦୂରୁ ଶୁଣି ମୋର ନାମ କେବଳ
ଅନ୍ୟାୟ ଅଧର୍ମ ମନ୍ତ୍ରୀ ମୋର ବେନି
ମୁହିଁ କଳିରାଜ ଶୁଣ ମୋ ଗାଥା,–
ପାପର ପ୍ରଶ୍ରୟ ପୁଣ୍ୟର ବିଲୟ
ମିଥ୍ୟା ପ୍ରବଞ୍ଚନା କୁକାର୍ଯ୍ୟେ ପ୍ରୀତି
ନିନ୍ଦା ଅପବାଦ ପରସ୍ୱ ଲୁଣ୍ଠନ
ଉତ୍କୋଚ ଗ୍ରହଣ ପ୍ରଜା ପୀଡ଼ନ
ସୁରା ଉପାସନା ବେଶ୍ୟା ଆରାଧନା
ଘରେ ଘରେ ଭେଦାଭେଦ ସୃଜନ
ଘରେ ଘରେ କଳି ଘରେ ଘରେ ମେଳି
ପର ଘରଭଙ୍ଗା ନୀତି ଆମ୍ଭର
ଆମ୍ଭର ପ୍ରଶଂସା ଆମ୍ଭେ ଶୁଣୁଥିବୁଁ
ନିଜେ ଗାଉଥିବୁଁ ନିଶି ବାସର
ପରର ରମଣୀ ପରର ନନ୍ଦନା
ଥିବେ ମୋ ରାଜ୍ୟରେ ଯେବେ ସୁନ୍ଦରୀ
ପ୍ରଜାପୁଏ ମୋର ଭାବିବା ଉଚିତ
ରାଜାଙ୍କର ସବୁ , ନୁହେ ଅନ୍ୟର;
ସମାଜ ବନ୍ଧନ ଶିଥିଳ କରଣ
ସ୍ୱାର୍ଥର ସାଧନ ମିଥ୍ୟା ଭାଷଣ

ସଜ୍ଜନ ପୀଡ଼ନ ଦୁର୍ଜ୍ଜନ ଆଦର
ପରଅନ୍ନେ ନିତ୍ୟ ଧୂର୍ତ୍ତ ଯତନ
ପଶୁ ଆଚରଣ ରାକ୍ଷସ ବେଭାର
ଭେକ ଶୋଷି ଗଲେ କ୍ରୂର ମାରଣ
ଖଟୁଆ ଖଲୁଆ ସଦା ଅଲ୍ପବୋଲା
ଭୁଚରବ ଜନ ମାନ ବର୍ଦ୍ଧନ
ଦରିଦ୍ର ତାରଣ ଧନୀକ ପାଳନ
ଦ୍ୱେଷ ତତ୍ତ୍ୱାମୃତ ନାଶ ଅମୃର
ନଜାଣିରେ ମୂଢ ଟଙ୍କା ଥୋଇ ତହିଁ
ତରଭୁଜ ଅଣିଅଛୁ ପାମର ?
ଭଲଦଶା ଯଦି ଅଛି ତୋର ଶୁଣ
ଯାଅ ତରଭୁଜ କ୍ଷେତ୍ରେ ତ୍ୱରିତ
ନିଜ ଟଙ୍କା ନିଜ ଅଣ୍ଟାରେ ଖୋସିଣ
ଖାଅ ତରଭୁଜ ଯାହା ଈପ୍ସିତ
ଅଭିଳାଷ ପୂର୍ଣ୍ଣ ହେଲାପରେ ଯେତେ
ବାଣ୍ଡ ଫଳ ବୃକ୍ଷ ଛିଣ୍ଡି ଉପାଡ଼
ଇତଃସ୍ତତ କର ପଦେ ଦଳ ମଳ
ଏଣେ ତେଣେ ସବୁ ଦେବୁ ଫୋପାଡ଼ି
ତେବେ ଯାଇଁ ଅମ୍ଭେ କରିବୁଁ ବିଶ୍ୱାସ
ଖାଣ୍ଟିଭକ୍ତି ତୋର ପଶିଛି ପ୍ରାଣେ
ସଭ୍ୟ ପଞ୍ଚେ କରିବୁଁ ଗ୍ରହଣ
ରାଜ ସଭାମଧ୍ୟେ ଉଚ୍ଚ ସମ୍ମାନେ ।
ଦୃଷ୍ଟାନ୍ତ ଅଧୀନ କି କହିବ ପାଠୁ
ଲାଗିଲେ ଉଭୟ ପଟୁ ଉତ୍କଟ

ଏଣେ ବଢ଼ୁଅଛୁ ଭୀଷଣ ପିପାସା

ତେଣେ ବଣରାଜ ଭୀମ ବଦନ

ଅଗତ୍ୟା କଲର ଉପଦେଶ ମତେ

ଧରିଲା ବାଟୋଇ ଅନ୍ୟାନ୍ୟ ବାଟ

କଲର ଅନ୍ତରେ ଛଳ ଥିବ୍ କିସ ?

ହାତବାଦ୍ୟ ଅଗେ ସଙ୍ଗୀତ ନାଟ ।

—୦✱✱✱୦—



# ଗଞ୍ଜୁଆର ଆତ୍ମଖେଦ ।

—*○❀○*—

କି ଥିଲା କି ହେଲା ?          କି ଦେଖିଲି ନେତ୍ରେ
କେତେ ବିପରୀତ ଘଟିଛି ଆଜ
ଭୀମ ଭୂମି କର୍ମେ          ସ୍ୱର୍ଣ୍ଣ ନଗରୀ-
ଶିରୀ ଶୋଭା ଅହା ! ଯାଇଛି ଭଙ୍ଗ ;
ପୁଣ୍ୟର ଶୀତଳ          ମଳୟ ଅନିଳ
ବହୁଥିଲା ଯହିଁ ନଚାଇ ପ୍ରାଣ
ପଚ୍ଚ ସଡ଼ା ଗନ୍ଧେ          ରହି ହେଉନାହିଁ
ବହଇ ଭୀଷଣ ଝଞ୍ଜା ତୋଫାନ ।
ନାହିଁ ସେ ପବନ          ଜାହ୍ନବୀ ପ୍ରବାହ
ସଦା ପ୍ରାଣମନ ଶାନ୍ତି ଆଧାର
ଦୁଷ୍ଟ ପାପର          ପ୍ରଖର ଉତ୍ତାପେ
ଶୁଷ୍କ ପ୍ରାଣ ଅହା ସାଧୁ ସଂସାର ।
ବିଳାସ ବ୍ୟସନ          ଦଳବଳ ସାଜ
ବିସ୍ତାରି ପ୍ରଭାବ ଅପ୍ରତିହତ
ସମସ୍ତ ସୌନ୍ଦର୍ଯ୍ୟ          ସମସ୍ତ ବିଭବ
କରୁଛନ୍ତି ଛାର ଖାର ସତତ ।
ସ୍ୱର୍ଗର ସଂସାର          କାହିଁ ଗଲା ଆଜ
ଗୌରବ ପୂର୍ଣ୍ଣ ସକଳ ସ୍ଥାନ

ଯହିଁ ଶୁଣ ଭାଇ,     ଉଠୁଛୁ ପାପର
ଅଶ୍ରାବ୍ୟ ଯଘନ୍ୟ କୁତ୍ସିତ ତାନ ।
ଧର୍ମ୍ମର ସାଧନା     ଜ୍ଞାନର ଗରିମା
ନାହିଁ ନାହିଁ ଆଉ ଗଳ୍ପୁଣି ଉଠେ
ଲମ୍ପଟ୍ୟ ଚାପଟ୍ୟ     ନସା ପରିପାଟ୍ୟ
ଉଠୁଛି ହୃଦୟ କନ୍ଦର ପୂରି ।
ସ୍ବଦେଶ ଭକତି     ତ୍ୟାଗସ୍ପୃ ପୀରତି-
ବଦଳେ ଲଗୁଛି ଯେ କାର୍ଯ୍ୟ ଏକ,
ଲେଖିଲେ ଲେଖକ     ଭାଷାରେ କଳଙ୍କ
ବୋଲିବେ ଲେଖକେ ସକଳେ ପାଙ୍କ ।
ପଣ୍ଡିତମଣ୍ଡିତ     ଥିଲରେ ଯେ ସ୍ଥାନ
ବାରଙ୍ଗନା ପାଇଁ ସଜ୍ଜିତ ତାହା ।
ଓଠୁଥିଲା ଯହିଁ     ଓଁକାର ଝଙ୍କାର
ଉଠୁଛି ବଦସ୍ୟ ସଙ୍ଗୀତ ରିହା ।
ଯହିଁ ସୁଧୀବର୍ଗ     ଆଦର ମର୍ଯ୍ୟାଦା
ପାଉଥିଲେ ନିତ୍ୟ ନିତ୍ୟ ଅହ୍ବାନେ
ଏକ ଗଣ୍ଡମୂର୍ଖେ     ଦାଗୀ ବଦମାସେ
ଲଭନ୍ତି ଆଦର ଉଚ୍ଚ ସମ୍ମାନେ ।
ଗର୍ଜ୍ଜିତ ଥିଲା ଯେ     ସ୍ଥାନରେ ସତତ
ଦର୍ଶନ ସାହିତ୍ୟ ଗ୍ରନ୍ଥ ନିକର
ଧାଡ ଧାଡ ତହିଁ     ଶୋଭଇ ବୋତଲ
ଢୋରବନ୍ଧା ନବ୍ୟ ସୁଧା-ସାଗର ।
କି ଥିଲା କି ହେଲା     ଶିକ୍ଷା ଖସିଗଲା
ସବୁ ସୁଖ ଛବା ଯାଉଛି ଭାବ

ସିଂହର ଗହ୍ୱରେ　　　　　ନାଚନ୍ତୁ ଶୃଗାଳେ
　　ବସ୍ତାର ଦୁର୍ବୃତ୍ତି ଦେଖ ହେ ଅନ୍ଧ ।
ଜୀବ ଥିଲେ ପିଣ୍ଡେ　　　　　ପ୍ରତି ଦଣ୍ଡେ ଦଣ୍ଡେ
　　କେତେ କଥା ପୁଣି ଦେଖା ନଯାଏ
ଖଲୁଅ ଲୋକତା’　　　　　ସହ ନ ପାରଣ
　　ବୃଥା ମୁଖବାଦ୍ୟ ବଜାଉ ଥାଏ ।
ବାଜ ଗଲେ ଧକ୍କା　　　　　ପାଇଯିବ ଶିକ୍ଷା
　　ଭଙ୍ଗିଯିବ ତାର ଖଳ ପଣିଆ ;
ଯେ ଯାହା କରନ୍ତୁ　　　　　ତା’ ମନ ମାନନ୍ତୁ
　　ଅନ୍ୟଙ୍କୁ ଘାରୁ ହେବ ବା କାହିଁ ।





# ବିଲେଇ ଓ ମୂଷା ।

—୦✿✿୦—

ଅହା କି ସୁନ୍ଦର ମୂଷାଟି, ଯଦି ଦୁଷ୍ଟ ବିରାଡ଼ି
ଦେଖିବ ଦୂରରୁ ଦଉଡ଼ି ଯାଇଁ ଧରିବ ମାଡ଼ି ,
ଏତେ ଯତନର ତନୁଟି କରିଦେବ ଅସାର
ପେଟ ମୁଖଣ୍ଡିକ ପାଇଁ କି କେତେ ଘୃଣ୍ୟ ବେଭାର ;
ବିରାଡ଼ିର ଏହି କୁକାର୍ଯ୍ୟେ ବ୍ୟସ୍ତ କାହିଁକି ମନ
ଖାଦ୍ୟ ଖାଦକର ସମ୍ବନ୍ଧ ତାହା ବିଧି ଘଟନ,
ବିଶେଷେ ବିରାଡ଼ି ଶ୍ୱାପଦ ହତାହତ-ବର୍ଜିତ ;
ତା' ପକ୍ଷେ ଏ କାର୍ଯ୍ୟ ସମ୍ଭବ ନୁହେ ତେତେ ଗର୍ହିତ ।
ଜୀବମଧ୍ୟେ ଶ୍ରେଷ୍ଠ ମାନବ- ବୋଲି ଖ୍ୟାତ ଜଗତେ
ନିନ୍ଦନୀୟ କର୍ମ୍ମ କରଇ ସେହୁ ଯେତେ ନିରତେ
ଭାବିଲେ ସେ କଥା ଦାରୁଣ କଷ୍ଟ ଉପୁଜେ ମନେ,
ଧର ନାଅଁ ବୋଲି ପଣନ୍ତେ ରହିବ କି ଗୋପନେ ?
ଆମେତ ମନୁଷ୍ୟ ଆମ୍ଭର କଥା ଭାବିତ ଭାଇ
ଆମର ଜାତିର ଶୋଣିତ ଆମେ ଯାଉଛେଁ ଖାଇ ।
ନଶିହ ପରଜା ସମୂହ ବ୍ୟକ୍ତିକର ଶୋଣିତ
ନଖାଇ ନପିଇ ସ୍ୱଗୃହେ ସଞ୍ଚିଥିବେ ଯେ ବିତ୍ତ ।
ଗୋଟାକେତେ ପୁଣି ଅମର ଦଳେଁ ବଡ଼ମନ୍ତ୍ରିଆ
ପିଟିମାରି ନେବେ ଛଡ଼ାଇ ବେକେ ଦେଇ ଡାଣ୍ଡିଆଁ ।

ତସ୍କରତାଲବ୍ଧ ଅର୍ଥରେ କେତେ ବଡ଼ପଣିଆ ?
ଅଟ୍ଟାଳେ ନିଜ ନାମର ପଦ-ଫଳଠାହୁଅ
ଅଲକ୍ଷ୍ୟ ଅନନ୍ତ ଜଗତେ ଦେଖୁ ନାହିଁକି ଭାଇ
କେତେ ଯୋଦ୍ଧା ଦାନ ଲଗିଛି ମାତ୍ର ସୁରଭି ଗାଈ ।
ବନ୍ଧମୁଣ୍ଡିଅର ଦଳରୁ ନୂଥଦଳେ ବାହାରି
ଦଳାସର ଗୟାକ୍ଷେତ୍ରରେ ବେଶ୍ୟା ପୁରୋଧା ଧରି
ପରମୁଣ୍ଡପିଣ୍ଡ ପକ୍ଷଦ-ଶ୍ରାଦ୍ଧ କରନ୍ତି ବସି
ଯାବତ ଯବନୀୟ କୁକ୍ରିୟା ସମାଜରେ ପ୍ରକାଶି ।
କେତେ ମାୟାକୃତ କପଟ-କର୍ମା ବଡ଼ଶୀ ଫେଇ
ନର ମାରୁଅଛି ନରକୁ ମୀନ ସମ ହାଟେଇ,
ପ୍ରତିମୂହୂର୍ତ୍ତରେ ସଂସାରେ ଯହିଁ ଦେଖିଲେ ଚାହିଁ
ନର ଅତ୍ୟାଚାର ଅନ୍ୟାୟ ଶୂନ୍ୟ ସ୍ଥାନତ ନାହିଁ ।
ତେବେ କାହିଁ ହେବ ବୋଲାଇ ଏମନ୍ତରେ "ଦୁଷ୍ଟ"
ମାନବର ଦୋଷ ଅପେକ୍ଷା ତାହା ନୁହଇ କିଛି ।





# ହସ୍ତୀ ଓ ମାନବ ।

ଚତୁର ମାନବ ଗଜକୁ ନିରେଖି
ଭାଷଇ "ରେ ମୂର୍ଖ, ମୂଢ଼ ଅଜ୍ଞାନ
ପର୍ବତ ସମାନ ଦେହ ବୋହୁଅଛୁ
ବଳେ କିଏ ଅଛି ତୋର ସମାନ
ଯୋଡ଼ୁ ସେ ଶରୀର ଯୋଡ଼ୁ ସେହି ବଳ
ସାମାନ୍ୟ ଅଙ୍କୁଶ ମୁନକୁ ଡର
ଜୀବନ ବିକଳି ଆଜ୍ଞା ମାନିଅଛୁ
ଧିକ୍ ରହୁଛୁ ଯା' ଏ ଦେହ ଧର" ।
ନରର ଭଂରଣ ଶୁଣି ମତ୍ତଦନ୍ତୀ
ଗମ୍ଭୀରେ ସ୍ୱଧୀରେ ଦେଲା ଉତ୍ତର
"ସତ୍ୟ ଯା' କହିଲ "ଗଜମୂର୍ଖ" ନାମ
ରହିଛି ତ ଭାଇ! ବଂଶେ ଅମ୍ଭର,
ପଶୁ ସମାଜରେ ଲଭିଛୁଁ ଜନମ
ନାହିଁ ବିଦ୍ୟା ନାହିଁ ବୁଦ୍ଧିର ବଳ
ଯେ ଯାହା କହିବ ଯେ ଯାହା କରିବ
ସହିବା ଅମ୍ଭର ଭାଗ୍ୟର ଫଳ ।
କିନ୍ତୁ କହଭାଇ ! ବୁଦ୍ଧି ବିଦ୍ୟା ଧରି
କି କାର୍ଯ୍ୟ କରୁଛ ତୁମ୍ଭେ ଜଗତେ

ଅପଣା ଘରରେ      ଭେଦବାଦ ସୃଜ
     ପଶୁଅଛ ଯିନ ଦ୍ୱେଷରେଂ ସେ ଦର୍ପେ ?
ଗୋଟିଏ ଲୋକର      ଅଙ୍ଗୁଳି ଅଗ୍ରକୁ
     କୋଟି କୋଟି ତୁମ୍ଭେ ଅନାଇଛ
ନ୍ୟାୟ କରୁଅବା      ଅନ୍ୟାୟ କରୁ ସେ
     ବେଦବୋଲି ତାହା ମାନି ନେଉଛ ,
ମନ ବୁଝୁଥିଲେ      ଅନ୍ୟଙ୍କୁ ବୋଲନ୍ତ
     ନାହିଁ ଶ୍ରଦ୍ଧା କରିବାକୁ ନାରାଜ
ତେବେ ବୁଦ୍ଧିବିଦ୍ୟା      ଗର୍ବ କର କାହିଁ
     କି ପ୍ରଭେଦ ଗଜ ନର ସମାଜ ?

—✽○✽○✽—



# ଭଲ ଯାଏ ମନ୍ଦରହେ ।

—❋❋❋—

କେତେ ସୁବିମଳ　　　　କୋମଳ କମଳ
　କଣ୍ଟକ ନାଳରେ ସରେ ଦୋଳୁଥ
ନଥିଲ ଶୋଭନା,　　　　ଜନମେ ବେଦନା
　ପଦ୍ମଷଣ୍ଡ ଯାହା ନାଡ଼ି ରହଇ ;
କେତେ ମନୋହର　　　　ଗୋଲାପ ସୁନ୍ଦର
　କଣ୍ଟା ଗଛ ବୋଲି ନଥିଲି ଦୁଃଖ
ଫୁଲ ଝଡ଼ି ଯାଏ　　　　କଣ୍ଟା ରହିଥାଏ
　ଏହାଙ୍କୁ ମାନବେ ଏଣେ ଅଯୁକ୍ତ
ଅମ୍ଳାନ ସ୍ନିଗ୍ଧର　　　　ପ୍ରାଣୀର ଜୀବନ !
　ଦୁର୍ଗନ୍ଧି ଶରୀରେ ବହନ୍ତି ବାୟୁ
ଜୀବନ ଯନ୍ତ୍ରଣା　　　　ଦେହ ପଞ୍ଜରରେ
　ଏହାଙ୍କ ମନକୁ ଉଠେର ହତାଶ :
ଭଲ ଚାଲି ଯିବ　　　　ମନ୍ଦ ରହି ଯିବ
　ପାଇ ସଂସାରରି ଏହି ବିଧାନ
ମନର ମର୍ତ୍ତ୍ୟରେ　　　　ବଢ଼ିବ ନରକ
　ଅତୁଳ ବିଭବ ମାନ ସମ୍ମାନ ।

—❋❋❋—

## ବାଦସାହୀ ପ୍ରଶ୍ନ ।

( ସଂଗୃହୀତ )

—❊❊❊—

ପ୍ରଶ୍ନ— ଖୋଦାଙ୍କ ଅସାଧ୍ୟ ଯାହା ମର୍ତ୍ତ୍ୟ ମଣ୍ଡଳେ
ସାଧ୍ୟ ହୋଇପାରେ କିନା ଅମ୍ଭ ଶକ୍ତିବଳେ ?
ଦିଅ ହେ ଉଜିର ଥକ ପ୍ରକୃତ ଉତ୍ତର
ନକହିଲେ ଶିର ଯିବ ନିଶ୍ଚୟ ତୁମ୍ଭର ।

ଉତ୍ତର—ପ୍ରବୀଣ ଉଜିର ଭାବି ପ୍ରତ୍ୟୁତ୍ପନ୍ନ ମନେ
ବୋଇଲେ ହେ ପ୍ରଭୁ ଅଛି କାର୍ଯ୍ୟ ଏଭୁବନେ;
ଖୋଦାର ଶକତି ନାହିଁ ରାଜ୍ୟରୁ ନିଜର
କରିବା ପାଇଁକି ନିଜ ପ୍ରଜା ରାଜ୍ୟାନ୍ତର ।
ଶ୍ରୀଛାମୁ କରରେ ଅଛି ସେ ପ୍ରବଳ ଶକ୍ତି
ଅକ୍ଳେଶେ ପାରିବେ ଦେଇ ରାଜ୍ୟାନ୍ତର ଶାସ୍ତି ।

—o❊❊o—

# ସାଧାରଣତଃ ।



ଘରର ଘରଣୀ ହୁଅଇ ସନ୍ତୁଷ୍ଟ
        ତାପାଇଁ ଗହଣା କଣିବା ବେଳେ
ଦେଖାଏ ଭକତ ଗୁରୁଜଙ୍କୁ ଶିଷ୍ୟ
        ବିଜୟା ଚିଲମ ବଢାଇ ଦେଲେ ।
ହୁଏ ପ୍ରାଣାଧିକ ବନ୍ଧୁ ଏ ଜଗତେ
        ହେଲେ ଗ୍ରନ୍ଥକାର ଭାଇ ! ଯେତେ
ଧାବ.ହ କାଳରେ ଏ ଜାଳର ପୁଏ
        ହୁଅନ୍ତି ବେନାଏ ପିତୃ ଭକତ ;
ଧାଜ ନାଜ ପତ୍ନୀ ଭୁଲି ଗୃହକର୍ମ
        ଶାସୁ ଶ୍ୱଶୁରଙ୍କ ନମାନ କଥା
ସେମିଜ ଗାଉନ ପିନ୍ଧି ନବଗ୍ରନ୍ଥେ
        ସାହାବାଣୀ ଢଙ୍ଗେ କହନ୍ତି କଥା
ଏକାଳର ନବ୍ୟ ଇଂରେଜୀ ପଢୁଆ
        ବାବୁଙ୍କର ମନ ହୁଅଇ ତୃପ୍ତ
ନବ ରଙ୍ଗ ଢଙ୍ଗ ଦେଖି ପିତା ମାତା
        ବାଧାଦେଲେ ତହିଁ ହୁଅନ୍ତି ଦୃପ୍ତ ।
ହାକିମଙ୍କ କଥା କିଅବ· କହିବା
        ଭଦ୍ର ପ୍ରଜାଏ ପ୍ରତି କାର୍ଯ୍ୟରେ

ପୁତ୍ରାଏ ପୁଲାଏ ଭାଲ ଦେଉଥିଲେ
    ମଣ୍ଡଳାଧିପ ଥାନ୍ତି ପୃଥ୍ୱୀ ଉପରେ ।
ଘୋର ଅତ୍ୟାଚାର କରିଥାନ୍ତି
    ପଶୁଙ୍କ ସମାନ ହୋଇ
ସୀମା ଅତିରିକ୍ତ କର, କରନ୍ତି
    ଅଣ୍ଟା ପଣ୍ଟା ବେଠି କାଠ ଯାବତ ,
ବିନା ଅପତ୍ତିରେ କଲେ ପ୍ରଜାନ୍ତୁ ଏ
    ହୁଅନ୍ତି ଧନ୍ୟ ଧ୍ୟ ରାଜ୍ୟ ନୃପତି
ରାଜଭକ୍ତ ପ୍ରଜାନାମେ ଖ୍ୟାତି ଅଟେ
    ପ୍ରଜାଙ୍କର ଘଟେ ମହାସୁଖୋଦୟ !

—○○ଃ❁ଃ○○—

